# ବଚନ ଶତକ

ଅନୁବାଦକ

ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ



ପ୍ରକାଶକ

ଓଡ଼ିଶା ଲେଖକ ସମବାୟ ସମିତ ଲମିଟେଡ୍

ଭୁବନେଶ୍ୱର

# ବଚନ ଶତକ

ଅନୁବାଦକ :
ଡଃ ଦେବୀପ୍ରସନ୍ନ ପଟ୍ଟନାୟକ
ସତ୍ତ୍ୱାଧିକାରିଣୀ
ଶ୍ରୀମତୀ ସୁଲକ୍ଷଣା ପଟ୍ଟନାୟକ
ପ୍ରଥମ ପ୍ରକାଶ :
ଶିବରାତ୍ରି, ୧୯୮୪
ପ୍ରକାଶକ :
ଓଡ଼ିଶା ଲେଖକ ସମବାୟ ସମିତି ଲିମିଟେଡ୍
ଭୁବନେଶ୍ୱର,
ପ୍ରଚ୍ଛଦ ଶିଳ୍ପୀ :
କ୍ଷୀରୋଦ ପରିଡା
ମୁଦ୍ରଣ :
ପ୍ରକାଶ ପ୍ରିଣ୍ଟିଙ୍ଗ୍ ଏଣ୍ଡ୍ ପବ୍ଲିସିଂ ୱାର୍କସ
ମଞ୍ଚେଶ୍ୱର, ଭୁବନେଶ୍ୱର-୫
ମୂଲ୍ୟ : ଦଶଟଙ୍କା ମାତ୍ର

# VACHAN SATAKA

Translated by:
**Dr. Debi Prasanna Patnaik**
*Director, Central Institute*
*of Indian Languages,*
Manas Gangotri, Mysore-570006
*Copy Right:*
Smt. Sulakshna Patnaik
*First Edition:*
Siva Ratri, 1984
*Published by :*
Orissa Writers' Co-operative
Society Ltd, Bhubaneswar
*Cover D:sign :*
Khirod Chandra Parida Bhubaneswar
*Prinied at:*
Prakash Printing & Publishing Works
*Price Rs. 10.00*

The Papers used for printing of this book were made available at Concessional rate by the Govt. of Orissa.

# ଋଣ ସ୍ୱୀକାର

ବଚନ ଅନୁବାଦ ପଛରେ ପ୍ରଧାନ ପ୍ରେରଣା ମହୀଶୂର ବିଶ୍ୱବିଦ୍ୟାଳୟ କନ୍ନଡ଼ ବିଭାଗର ଅଧ୍ୟାପକ ପ୍ରଭୁଶଙ୍କର । ନିଷ୍ଠାର ସହିତ ପ୍ରତ୍ୟେକ କନ୍ନଡ଼ ଶବ୍ଦର ଅର୍ଥ ଆଲୋଚନା ଠାରୁ ଆରମ୍ଭ କରି ସେମାନେ ଲିପ୍ୟନ୍ତରଣ ଓ ଇଂରେଜୀ ଅନୁବାଦ ଯେ ନ କରି ଥିଲେ ଏ ଅନୁବାଦ ସମ୍ଭବ ହୋଇ ନଥାନ୍ତା ।

'ଭେନକୁଏଲ'ର କବି ଓ ଇଂରାଜୀ ଅଧ୍ୟାପିକା ସ୍ୱେଏନାହଲ୍ ଏ ବଚନ ଗୁଡ଼ିକର ଇଂରେଜୀ ଅନୁବାଦ କରିଛନ୍ତି ଡକ୍ଟର ପ୍ରଭୁଶଙ୍କରଙ୍କ ସହାୟତାରେ । ପ୍ରକୃତରେ ଆମେ ତିନିଜଣ ଏକାଠି କାମ କରିବା ଫଳରେ ଓଡ଼ିଆ ଅନୁବାଦ ବହୁ ପରିମାଣରେ ଉନ୍ନତ ହୋଇଛି ।

ବିଶିଷ୍ଟ ବଙ୍ଗାଳୀ ଲେଖକ ଅଧ୍ୟାପକ ନବନୀତା ଦେବସେନ୍ ଏ ଗୁଡ଼ିକର ବଙ୍ଗଳା ଅନୁବାଦ କରିଛନ୍ତି । ତାଙ୍କ ସହିତ ଅନେକ ଗୁଡ଼ିଏ ବଚନର ଅନୁବାଦ ଏକାଠି କରିବା ଫଳରେ ମୁଁ ଉପକୃତ ହୋଇଛି ।

ମୋର କେତେକ ବିଶିଷ୍ଟ ସାହିତ୍ୟିକ ବନ୍ଧୁ ଅନୁବାଦ ପଢ଼ି ମୋତେ ଉତ୍ସାହିତ କରିଛନ୍ତି । ସେମାନଙ୍କ ମଧ୍ୟରେ ଶ୍ରୀ ଗୋପୀନାଥ ମହାନ୍ତି, ଶ୍ରୀ ସୀତାକାନ୍ତ ମହାପାତ୍ର, ଶ୍ରୀ ଜୟନ୍ତ ମହାପାତ୍ର, ଶ୍ରୀ ଯତୀନ୍ଦ୍ର ମୋହନ ମହାନ୍ତିଙ୍କ ନାଁ ପ୍ରଥମେ ମନକୁ ଆସୁଛି । କନ୍ନଡ ସାହିତ୍ୟିକମାନଙ୍କ ମଧ୍ୟରୁ ଅନେକ ମୋତେ ଉତ୍ସାହିତ କରିଅଛନ୍ତି ।

ପରମ ସୌଭାଗ୍ୟର ବିଷୟ ଯେ ତରଳବାଳୁ ମଠର ଯୁବକ ସ୍ୱାମୀ ମୋତେ ତାଙ୍କର ପୂର୍ଣ୍ଣିମୀ ମହୋତ୍ସବରେ ଅନୁବାଦ ପଢ଼ିବାକୁ ସୁଯୋଗ ଦେଇଛନ୍ତି ।

ପ୍ରଭୁଶଙ୍କରଙ୍କ ପରିବାରର ଡକ୍ଟର ଶାନ୍ତ, ନିବେଦିତା ଓ ଅର୍ପିତା ଏବଂ ପଟ୍ଟନାୟକ ପରିବାରର ସଂଘମିତ୍ରା, ସୁପ୍ରିୟା, ଚନ୍ଦ୍ରଭାନୁ ଓ ସୁଲକ୍ଷଣା ବଚନ ଶୁଣି ଅତିଷ୍ଠ ହୋଇଥିଲେ ମଧ୍ୟ ନାନା ଭାବରେ ଉତ୍ସାହିତ କରିଛନ୍ତି ।

ସକାଳ ବୁଲ ଦଳର ପ୍ରଫେସର ସଫିଉଲ୍ଲା; ଏମ୍, ଏନ୍ ପାର୍ଥସାରଥି ଓ ଅନ୍ୟାନ୍ୟ ବନ୍ଧୁମାନେ ନାନାଭାବରେ ଉତ୍ସାହ ଦେଇଛନ୍ତି ।

ଓଡ଼ିଆ ଲେଖକ ସହଯୋଗ ସମିତି ଏ ଗ୍ରନ୍ଥର ପ୍ରକାଶନ ଦାୟିତ୍ୱ ଗ୍ରହଣକରି ମୋତେ ଋଣବଦ୍ଧ କରିଛନ୍ତି ।

ଡକ୍ଟର ପ୍ରଭୁଶଙ୍କରଙ୍କ ସହାୟତାରେ ଲିଙ୍ଗାୟତ ମଠର ଆର୍ଥିକ ଆନୁକୂଲ୍ୟ ହେତୁ କେତେକ ବହିର ନିଃଶୁଳ୍କ ବିତରଣ ସମ୍ଭବ ହୋଇଛି ।

ଯେଉଁମାନଙ୍କର ନାମ ଉଲ୍ଲେଖ ନାହିଁ, ଅଥଚ ସେମାନେ ଏ କାର୍ଯ୍ୟରେ ଭିନ୍ନ ଭାବରେ ସହାୟତା କରିଛନ୍ତି ସେମାନେ ମୋର ଋଣ ସ୍ୱୀକାର ଗ୍ରହଣ କରନ୍ତୁ ।

ସମସ୍ତଙ୍କ ପାଖରେ ମୁଁ ଋଣ ସ୍ୱୀକାର କରୁଛି ।

**ଦେବୀପ୍ରସନ୍ନ ପଟ୍ଟନାୟକ**

# ଅନୁବାଦକର ଟିପ୍ପଣୀ

ଭାରତୀୟ ଭାଷାମାନଙ୍କର ଅନୁବାଦ କଲାବେଳେ ପ୍ରଥମେ ପ୍ରଶ୍ନଉଠେ କେଉଁ ଶୈଳୀ ଓ କେଉଁ ଭାଷା ବ୍ୟବହାର କରିବାକୁ ହେବ । ଓଡ଼ିଆରେ 'ଦନ୍ତ' ଓ 'ଦାନ୍ତ' ଉଭୟ ଶବ୍ଦ ସାଙ୍ଗରେ 'ଚିକିତ୍ସା' ମିଶାଇଲେ ଚଳିଯିବ । କିନ୍ତୁ ହିନ୍ଦୀରେ 'ଦନ୍ତ ଚିକିତ୍ସା' ହେଲେ 'ଦାଁତ କାଇଲାଜ' ହେବ । ସେଇଁଟି ବ୍ୟବହାର କରାଯିବ ! ସେଇ ଅନୁସାରେ ଭାଷାର ଶୈଳୀ ମଧ୍ୟ ବଦଳିଯିବ । ତେଲୁଗୁରେ ଗ୍ରାନ୍ଥିକ ଓ ଶିଷ୍ଟ ବ୍ୟାବହାରିକ ଶୈଳୀର ବ୍ୟବହାର ସମ୍ବନ୍ଧରେ ବିବାଦ ସୁବିଦିତ । ତାମିଲ ଭାଷାରେ କଥିତ ଓ ଲିଖିତ ମଧ୍ୟରେ ପାର୍ଥକ୍ୟ ସେହିପରି ଜଣାଶୁଣା । କନ୍ନଡରେ ମଧ୍ୟ ସେହିପରି ଦୁଇଟି ଶୈଳୀ ଅଛି । ଖାଲି କନ୍ନଡ଼ରେ କାହିଁକି ଓଡ଼ିଆରେ ମଧ୍ୟ ସେଇ ଅବସ୍ଥା । ଉରଲିଙ୍ଗ ପେଦ୍ଦିଙ୍କର ବଚନଟିକୁ ଓଡ଼ିଆରେ ନିମ୍ନ ମତେ ଦୁଇ ପ୍ରକାର ଅନୁବାଦ କରାଯାଇ ପାରେ ।

୧ । ଆତ୍ମ ଜ୍ଞାନରେ ଶରଣ ।
ଆତ୍ମ ବିସ୍ମରଣରେ ମାନବ ।

୨ । ନିଜକୁ ଜାଣିଲେ ଶରଣ ।
ନିଜକୁ ଭୁଲିଲେ ମଣିଷ ।

ଏ ଦୁଇ ଅନୁବାଦ ମଧ୍ୟରେ ପାର୍ଥକ୍ୟ ଅଧିକ ବୁଝାଇ କହିବାର ପ୍ରୟୋଜନ ନାହିଁ ।

ଅନୁବାଦକ ଆଗରେ ଗୋଟିଏ ବଡ ସମସ୍ୟା — ଅର୍ଥ ନା ଶବ୍ଦ ? କାଳିଦାସ ବାକ୍ ଓ ଅର୍ଥର ସମ୍ପର୍କକୁ ଅର୍ଦ୍ଧନାରୀଶ୍ୱରର ରୂପେ କଳ୍ପନା କରିଛନ୍ତି । ଇଏ ହେଲା ସ୍ରଷ୍ଟାର ଦୃଷ୍ଟି । ବହୁ ବୈୟାକରଣ ଓ ସମାଲୋଚକ ମଧ୍ୟ ବାକ୍ ଓ ଅର୍ଥର ଅବିଚ୍ଛିନ୍ନତା ସ୍ୱୀକାର କରିଛନ୍ତି । ଭାଷାନ୍ତରଣରେ କିନ୍ତୁ ସବୁବେଳେ ବାକ୍ ଓ ଅର୍ଥ ଉପରେ ସମାନ ପ୍ରାଧାନ୍ୟ ଦେବା ସମ୍ଭବ ହୁଏ ନାହିଁ । ଏଣେ ବାହାରର ଗୁମ୍ଫ ବିଚାର କରୁକରୁ ଭିତରର ଅର୍ଥ ହାତଛଡା ହୋଇ ଗଲେତ ଅର୍ଥକୁ ଧରି ଅନୁବାଦ କରୁକରୁ ବାହାର ଗୁମ୍ଫ ବଦଳି ଗଲାଣି । ଏହି ଅନୁବାଦରେ ଯେତେଦୂର ସମ୍ଭବ ଉଭୟକୁ ଧରିବାର ଚେଷ୍ଟା କରାଯାଇଛି ।

କନ୍ନଡ଼ ମୂଳ ଓ ଇଂରାଜୀ ଅନୁବାଦ ଉଭୟ ସାହାଯ୍ୟରେ ଏ ଅନୁବାଦ କରାଯାଇଛି । କିନ୍ତୁ ଅନେକ ସମୟରେ ଇଂରାଜୀ ଅନୁବାଦ ବାଧା ରୂପେ କାର୍ଯ୍ୟ କରିଛି । ଏପରିକି ଏ . କେ . ରାମାନୁଜନଙ୍କ (୧) ମାର୍ମିକ ଅନୁବାଦ ମଧ୍ୟ ଅନେକ ସମୟରେ ମୋ ମନକୁ ପାଇନାହିଁ । 'ମନ' କୁ ' **Heart** ' ରୂପେ ଅନୁବାଦ ସମ୍ଭବତଃ ପଶ୍ଚିମୀ ପାଠକଙ୍କୁ ଆଖି ଆଗରେ ରଖି କରାଯାଇଛି । ଉଦାହରଣ ସ୍ୱରୂପ

"ମନ ତୋଳନ୍ତି ଖଣ୍ଟୁ ତୁମ୍ମି" କୁ ରାମାନୁଜନ **lust in the heart** କରିଥିଲା ବେଳେ ମୁଁ 'ମନଭିତ୍ରି କାମନା' କରିଛି । ଅଧ୍ୟାପକ ଭୂସନୂରମଠ ଓ ମେନେଜେସଙ୍କ (୨) ଅନୁବାଦ ଅନେକ ସ୍ଥାନରେ ମୂଳ କନ୍ନଡ ଠାରୁ ବହୁଦୂରରେ । ମୂଳ 'କଙ୍କଣ କଇଦାର ସ୍ଥିର ସେସେ ସ୍ୱନ୍ଦିକ' ଅନୁବାଦରେ ସେମାନେ କହିଛନ୍ତି **"Perfoumed my marrage - rite / with bracelets and with water pourcd / upon tne cupped hands and with lasting rice /"** ଅଞ୍ଜୁଳା ହାତରେ ପାଣି ଢାଳିବା ଅନୁବାଦକଙ୍କର କଳ୍ପନା ବିସ୍ତାରର ପରିମାଣ ।

ମୁକ୍ତ ଛନ୍ଦରେ କବିତାର ସାମଞ୍ଜସ୍ୟ ଆଣିବା ପାଇଁ ଅନୁବାଦକଙ୍କୁ ଅନେକ ସମସ୍ୟାରେ ଭାବିବାକୁ ପଡ଼େ । 'ବଚନଟିର ନାମାମୃତ ଲୋଷ୍ଟି' ବଚନରେ ମୂଳ କନ୍ନଡରେ 'ତୁମ୍ମି' ଶବ୍ଦ ପ୍ରୟୋଗ ଦ୍ୱାରା **pun** ସୃଷ୍ଟି କରାଯାଇଛି । 'ତୁମ୍ମି'ର ଅର୍ଥ 'ଭଉ' "ଭଉଁକର" । ଏହାର ଆଉ ଏକ ଅର୍ଥ 'ଭ୍ରମର' । ଏହାର ବଙ୍ଗଳା ଅନୁବାଦ କଲାବେଳେ ନବନୀତା ଦେବସେନ ଏହି ବଚନଟିରେ 'ଭୟ' ଓ 'ଭ୍ରମର' ରଖିଛନ୍ତି । କିନ୍ତୁ ସମସ୍ତ ପଦରେ ନଥିଲେ ସୁଦ୍ଧା ନାମାମୃତ ସାଙ୍ଗେ ଶବ୍ଦସାମ୍ୟ ରକ୍ଷି ରୂପ ଅମୃତ, କାନ୍ତିଅମୃତ ବ୍ୟବହାର କରିଛନ୍ତି । ଯେତେଦୂର ସମ୍ଭବ ଏ ଅନୁବାଦରେ ମୁଁ ଅନାବଶ୍ୟକ ଶବ୍ଦ ବ୍ୟବହାର କରିନାହିଁ ।

କନ୍ନଡରୁ ଓଡ଼ିଆକୁ ସିଧା ଅନୁବାଦରେ ଅନେକ ସୁବିଧା ଥିଲେ ସୁଦ୍ଧା ଅସୁବିଧା କମ୍ ନାହିଁ । କନ୍ନଡ଼ର 'ଆୟ୍ୟା' ଶବ୍ଦର ଓଡ଼ିଆ ପ୍ରତିଶବ୍ଦ ନାହିଁ । ସ୍ୱାମୀ, ପ୍ରଭୁ, ଦେବ, ପିତା ପରି ଶବ୍ଦ ବ୍ୟବହାର କରିବା ବଦଳରେ ମୁଁ 'ସାଧୁ' ଶବ୍ଦ ବ୍ୟବହାର କରିଛି । 'ଅୟ୍ୟା' ଶବ୍ଦରେ ଯେଉଁ ଆତ୍ମୀୟତା ଅଛି ତାହା ଉପରେ ଦିଆଯାଇଥିବା କୌଣସି ଶବ୍ଦରେ ନାହିଁ । କବୀର 'ଶୁନ ଭାଇ ସାଧୁ' ବ୍ୟବହାର କରିଛନ୍ତି । ସାଧୁ ବାଦ ଶବ୍ଦରେ ସାଧୁ ବାବାଜୀ ନୁହେଁ । ଏହି ଶବ୍ଦର ଅର୍ଥ ପରିଧିର ବିସ୍ତୃତି କରି ଏହାକୁ ହିଁ ନିକଟତମ ପ୍ରତି ଶବ୍ଦ ରୂପେ ଗ୍ରହଣ କରାଯାଇଛି । ଅନେକ ସ୍ଥାନରେ 'ଆୟ୍ୟା' ଶବ୍ଦକୁ ମଧ୍ୟ ମୁଁ ବାଦ ଦେଇଛି । ଅକ୍କା ମହାଦେବୀଙ୍କର ଗୋଟିଏ ବଚନରେ ଅର୍ଥ ଦୃଷ୍ଟିରୁ 'ପ୍ରଭୁ' ଶବ୍ଦ ବ୍ୟବହାର କରାଯାଇଛି ।

ଅନୁବାଦ ଅନୁକରଣରେ ନୂତନ ସୃଷ୍ଟି ନୁହେଁ । ରାମ କଥାକୁ ଧରି ଭାରତୀୟ ବିଭିନ୍ନ ଭାଷାରେ ଯେଉଁ ରାମାୟଣମାନ ଦେଖିବାକୁ ମିଳେ ତାହା ମୂଳ ବାଲ୍ମୀକିଙ୍କ ରାମାୟଣର ଅକ୍ଷରିକ ଅନୁବାଦ ନୁହେଁ । ବଳରାମ ଦାସ, ତୁଳସୀ ଦାସ କିମ୍ବା କମ୍ବନ ସମସ୍ତେ ମୂଳ ରାମାୟଣକୁ ଧରି ଆପଣାର ସୃଷ୍ଟିଶୀଳତାର ପୁଟ ଦେଇ ନୂତନ ସୃଷ୍ଟି କରିଛନ୍ତି । ଏମାନଙ୍କ ରାମାୟଣକୁ ଅନୁବାଦ କୁହାଯାଇ ପାରିବନାହିଁ ।

ଗୀତ ଗୋବିନ୍ଦ କିମ୍ବା ଓମରଖୈୟାମର ବହୁତ ଅନୁବାଦ ହୋଇଛି । ଏପରିକି ଗୋଟିଏ ଭାଷାରେ ଏ ଗୁଡ଼ିକର ଏକାଧିକ ଅନୁବାଦ ଦେଖିବାକୁ ମିଳେ । ଅନୁବାଦ ବିଚାରରେ ଶବ୍ଦ ଚୟନ, ଅର୍ଥାନ୍ତରଣ, ଛନ୍ଦ ଓ ସଂଗୀତାତ୍ମକତା ଓ ଏ ସମସ୍ତର ସମାହାରରେ ମୂଳ ଗ୍ରନ୍ଥର ସାମାଜିକ ଐତିହାସିକ ପୃଷ୍ଠଭୂମିର ପୁନର୍ଗଠନ ମୁଖ୍ୟ ସ୍ଥାନ ଅଧିକାର କରନ୍ତି ।

ଗାର୍ଭିନ୍ (୩) ଅନୁବାଦକ ମାନଙ୍କ ପାଇଁ ତିନୋଟି ଉପଦେଶ ଦେଇଛନ୍ତି । ତାଙ୍କ ମତରେ ମୂଳ ରଚନାର ଶବ୍ଦ ଭଣ୍ଡାର ଉପରେ ଏକ ପକ୍ଷରେ ରଚନାର ମୂଳ ସ୍ୱର ସହିତ ଅଙ୍ଗାଙ୍ଗୀ ଭାବରେ ସମ୍ପୃକ୍ତ ଓ ଅନ୍ୟ ପକ୍ଷରେ ରଚନା ଶୈଳୀ ସହିତ ଘନିଷ୍ଠ ଭାବରେ ସମ୍ବନ୍ଧିତ, ଅନୁବାଦକ ବିଚାର କରି ଦେଖିବା ପ୍ରୟୋଜନ । ପୁଣି ଅନୁବାଦକ ଦୁଇ ଭାଷାର ଭାଷାତାତ୍ତ୍ୱିକ ଗଠନଗତ ତାରତମ୍ୟ ସମ୍ବନ୍ଧରେ ଅବହିତ ହେବା ପ୍ରୟୋଜନ । ତାହାହେଲେ ଯାଇ ଅନୁବାଦକ ଉଭୟ ଭାଷାର ପାର୍ଥକ୍ୟ ଜନିତ ଭେଦକୁ ଅତିକ୍ରମ କରିପାରିବ । ତୃତୀୟତଃ ତାଙ୍କ ମତରେ ଅନୁବାଦକ ମୂଳଭାଷାର ଶୈଳୀକୁ ଅନୁବାଦର ଭାଷାରେ ପୁନର୍ବିନ୍ୟାସ କରିବା ପ୍ରୟୋଜନ । (୪) ଗାଉନଙ୍କର ତୃତୀୟ ଉପଦେଶକୁ ଦୁଇ ପ୍ରକାର ଅର୍ଥ କରାଯାଇପାରେ । ଯଦି ଅନୁବାଦର ଭାଷାରେ ମୂଳ ରଚନାର ଶୈଳୀ ନଥାଏ, ତେବେ ମୂଳ ଶୈଳୀର ପୁନର୍ଗଠନ କରି ଅନୁବାଦର ଭାଷାକୁ ସମୃଦ୍ଧ କରାଯିବ । ପୁଣି ଯଦି ଅନୁବାଦର ଭାଷାରେ ମୂଳ ଭାଷା ସମାନ ନୋହିଲେ ସୁଦ୍ଧା ତୁଳନୀୟ ଶୈଳୀ ଥାଏ, ତେବେ ଏହାକୁ ବ୍ୟବହାର କରି ମୂଳ ରଚନାର ଆତ୍ମିକ ଶୈଳୀକୁ ଏଥିରେ ଫୁଟାଇବାକୁ ହେବ । ପ୍ରସ୍ତୁତ ବଚନ ଅନୁବାଦରେ ଏହି ଦ୍ୱିତୀୟ ଅର୍ଥରେ କନ୍ନଡ଼ ବଚନକାରଙ୍କର ଶୈଳୀକୁ ଓଡ଼ିଆରେ ପ୍ରକାଶ କରାଯାଇଛି । ରୁଦ୍ରସୁଧାନିଧି, ପଞ୍ଚସଖା, ଭୀମଭୋଇ, ସାଲବେଗ ଓ ଓଡ଼ିଆ ଡାକବଚନ, ପହିଲି ଅଦର ପରମ୍ପରାରେ ବିଶେଷକରି ଓଡ଼ିଆ ମିଷ୍ଟିକ୍ କବିଙ୍କ ରଚନାରୁ ସମାନ୍ତର ରଚନାଭଙ୍ଗୀ ଗ୍ରହଣକରି ବଚନଗୁଡ଼ିକର ଓଡ଼ିଆରୂପ ପ୍ରସ୍ତୁତ କରାଯାଇଛି । ଏହାଫଳରେ ବଚନ ଗୁଡ଼ିକ ଉଭୟ କନ୍ନଡ଼ ଓ ଓଡ଼ିଆ ଭାଷୀ ପାଠକ, ସମୀକ୍ଷକଙ୍କ ଦୃଷ୍ଟିରେ ଯେ ମୌଳିକ ପ୍ରତୀତ ହେବ ଏ ଭରସା ମୋର ଅଛି ।

ନାଇଡ଼ା (୫)ଙ୍କ ମତରେ ଅବ୍ୟାକରଣିକ ପ୍ରୟୋଗ ଏବଂ ଅନୁବାଦର ଭାଷାରେ ଅପ୍ରଚଳିତ ପ୍ରୟୋଗ ଦ୍ୱାରା ରଚନାର ମୂଳ ସ୍ୱର ଚାପା ପଡ଼ିଯାଏ । ସାଧାରଣ ଅର୍ଥରେ ଅପ୍ରଚଳିତ ଭାଷା ସନ୍ଧ୍ୟା ଭାଷାରେ ଲେଖାହୋଇଥିବା ରଚନା ଗୁଡ଼ିକର ଅନୁବାଦ କଠିନ ହୋଇଥାଏ । ହେଲେ ମଧ୍ୟ ଭକ୍ତଙ୍କ

ପରମ୍ପରାରେ ଗତ କେତେ ହଜାର ବର୍ଷର ସାଂସ୍କୃତିକ ଆଦାନ ପ୍ରଦାନ ଫଳରେ ଦାର୍ଶନିକ ଓ ସାହିତ୍ୟିକ କ୍ଷେତ୍ରରେ ଏକ ସର୍ବମାନ୍ୟ ପରିଭାଷାର ସୃଷ୍ଟି ହୋଇଛି । ବଚନ ଅନୁବାଦ କଠିନ ହେଲେ ସୁଦ୍ଧା ଅସମ୍ଭବ ଯେ ହୋଇନାହିଁ ଏହା ହିଁ ଅନୁବାଦକର ପୁରସ୍କାର ! ମୂଳବଚନ ଗୁଡ଼ିକ ସାଧାରଣ ଲୋକଙ୍କ ପାଇଁ ଉଦ୍ଦିଷ୍ଟ । ତେଣୁ ଅନୁବାଦରେ ସାହିତ୍ୟିକ ଉତ୍କର୍ଷକୁ ଧରିବାକୁ ଉପେକ୍ଷା କରାଯାଇ ନାହିଁ । ସାହିତ୍ୟ ଚଳଣି ଓ ଲୋକ ଚଳଣିକୁ ମିଳେଇବାରେ କୌଣସି ତ୍ରୁଟି ପାଠକ ଦର୍ଶାଇଲେ ପରବର୍ତ୍ତୀ ସଂସ୍କରଣରେ ଏହାର ସଂଶୋଧନ କରିବାର ପ୍ରତିଶ୍ରୁତି ରହିଲା ।

---

୧ । ରାମାନୁଜନ, ଏ. କେ. ସ୍ପିକିଙ୍ଗ ଅଫ୍ ଶିବ, ୧୯୭୩-ପେଙ୍ଗୁଇନ କ୍ଲାସିକ୍ସ ।

୨ । ଭୂଷନୁରମଠ, ଅଧ୍ୟାପକ ଏସ୍., ଏସ୍., ଏବଂ ପ୍ରଫେସର ଆରମାଣ୍ଡୋ ମେନେଜେସ୍ (ସମ୍ପାଦିତ) ଶୂନ୍ୟ ସଂପାଦନେ ୧୯୭୦, କର୍ଣ୍ଣାଟକ ୟୁନିଭରସିଟି ପ୍ରେସ, ଧାରୱାଡ଼ ।

୩ । ଗାର୍ଭିନ, ପଲ୍, ଏଲ୍ ଏ ପ୍ରାଗ୍ ସ୍କୁଲ୍ ରିଡର ଅନ୍ ଏସ ଥେଟିକ୍ସ, ଲିଟେରାରି ଷ୍ଟ୍ରକ୍‌ଚର ଏଣ୍ଡ ଷ୍ଟାଇଲ୍, ୧୯୫୫, ୱାସିଙ୍ଗଟନ ଲିଙ୍ଗୁଇଷ୍ଟିକ୍ କ୍ଲବ ।

୪ । ନାଇଡା, ଇ. ଏ. ଟୁଆର୍ଡସ, ଏ ସାଇନ୍ସ ଅଫ ଟ୍ରାନ୍ସଲେଟିଙ୍ଗ, ୧୯୬୪, ଇ. ଜେ. ବ୍ରିଲ ପୃ-୧୩୪ ।

ବଚନ କାରଙ୍କ ବିଭିନ୍ନ ରଚନା ନାନା କାରଣରୁ ଏକ ସୂତ୍ରରୁ ନେବା ସମ୍ଭବ ହୋଇନାହିଁ । ଅଧିକାଂଶ ବଚନର ପାଠ ଭୂସନୁରମଠ ସମ୍ପାଦିତ, ବଚନ ସାହିତ୍ୟ ସଂଗ୍ରହ (କର୍ଣ୍ଣାଟକ ସରକାର, ୧୯୬୫) ଗ୍ରନ୍ଥରୁ ଗ୍ରହଣ କରାଯାଇ-ଥିଲେ ମଧ୍ୟ ତହିଁରେ ନିମ୍ନ ବ୍ୟତିକ୍ରମ ରହିଛି ।

ଆଲ୍ଲମଙ୍କର ୧୭ ଓ ୨୨ ବଚନର ପାଠ ଏଲ୍. ବସବରାଜ ସମ୍ପାଦିତ ଆଲ୍ଲମନ ବଚନ ଚନ୍ଦ୍ରିକେ (୧୯୬୦) ଗ୍ରନ୍ଥରୁ ଗ୍ରହଣ କରାଯାଇଛି ।

ବସବଙ୍କର ୫, ୭, ୨୧, ୨୨, ବଚନର ପାଠ ଏଲ୍. ବସବରାଜ ସମ୍ପାଦିତ ବସବେଶ୍ୱର ବଚନ ସଂଗ୍ରହ ( ଡି. ଭି. କେ. ମୂର୍ତ୍ତି, ମହୀଶୂର ୧୯୬୪) ରୁ ଗୃହୀତ ହୋଇଛି ।

ମହାଦେବୀ ଅକ୍କାଙ୍କର ୯, ୧୬, ୧୫, ୧୯ର ପାଠ ଏଲ୍ ବସବରାଜ ସମ୍ପାଦିତ ଅକ୍କନ ବଚନ ଗଳୁ (ଡି. ଭି. କେ. ମୂର୍ତ୍ତି, ମହୀଶୂର ୧୯୬୬) ଗ୍ରନ୍ଥରୁ ଗୃହୀତ ।

# ସୂଚୀ ପତ୍ର

# ମୁଖବନ୍ଧ

‘ବଚନ’ ଓଡ଼ିଆ ସାହିତ୍ୟ କିମ୍ବା ଜନଜୀବନରେ ଅଜଣା ନୁହେଁ । ଖନା ବଚନ, ଡାକ ବଚନରେ ଯେଉଁ ଲୋକ ବିଦ୍‌ବତ୍ତା ପୂରି ରହିଲେ ତାର ତୁଳନା ନାହିଁ । ପ୍ରକୃତ ପକ୍ଷରେ ବଚନ ହେଉଛି ମୁହଁର କଥା । ଜୀବନ—ଘନ ଅନୁଭୂତ ଘଟଣା ଓ ସମସ୍ତ ବିଶେଷରେ ସଂକ୍ଷିପ୍ତ ରୂପରେ ସାଧାରଣତଃ ପ୍ରକାଶ ପାଇଥାଏ । ଗୋଟିଏ ଦୃଷ୍ଟିରୁ ଦେଖିଲେ ଢଗ, ଢମାଳି, ପ୍ରବାଦ, ପ୍ରହେଳୀ ସବୁ ବଚନ । ବେଦ ପୁରାଣର ଜ୍ଞାନ ଯେତେବେଳେ ଲୋକମୁଖୀ ହୋଇ ପଣ୍ଡିତ ଚତୁରଙ୍କ ଠାରୁ ସୁଧୀ ଗ୍ରାହକ ସାଧାରଣଙ୍କ ଉଦ୍ଦେଶ୍ୟରେ ମୁହେଁ ମୁହେଁ ବୁଲେ ତା ହୋଇଯାଏ ପ୍ରବଚନ । ଏଇ ବଚନ ଓ ପ୍ରବଚନ କାଳେ କାଳେ ଭାରତୀୟ ଲୋକଚରିତ୍ର ଗଠନ ଏବଂ ଲୋକଜ୍ଞାନ ସଂପ୍ରସାରଣ କରି ଭାରତୀୟ ସାଂସ୍କୃତିକ ଏକତା ଦିଗରେ ଯେ କାର୍ଯ୍ୟ କରିଛି ଏକଥା ଭୁଲିଗଲେ ଚଳିବ ନାହିଁ ।

ରବର୍ଟ ରେଡ଼ଫିଲ୍‌ଡ୍‌ ଓ ମିଲଟନ୍‌ ସିଙ୍ଗରଙ୍କ ପରି ପାଶ୍ଚାତ୍ୟ ପଣ୍ଡିତମାନେ ଭାରତୀୟ ସଂସ୍କୃତି ବିଷୟରେ ବଡ଼ **(great)** ଓ ସାନ **(little)** ପରମ୍ପରା ଭେଦ ଦେଖିଛନ୍ତି । ପାଶ୍ଚାତ୍ୟ ବୌଦ୍ଧିକ ପରମ୍ପରାରେ ଗଢ଼ି ଉଠିଥିବା ଭାରତୀୟ ସମାଜ ବିଜ୍ଞାନୀ ମାନେ ମଧ୍ୟ ନିର୍ବିଘ୍ନରେ ଏହାକୁ ଗ୍ରହଣ କରି ନେଇଛନ୍ତି । ଅଧ୍ୟାପକ ଏ. କେ. ରାମାନୁଜନ, ଯେ ପଶ୍ଚିମରେ ଭାରତୀୟ ସଂସ୍କୃତିର ପ୍ରବକ୍ତା ଭାବରେ ସୁନାମ ଅର୍ଜନ କରିଛନ୍ତି, ଆପଣା ବଚନ ଅନୁବାଦର ମୁଖବନ୍ଧରେ ଏହି ଭେଦକୁ ମଧ୍ୟ ସ୍ୱୀକାର କରିଛନ୍ତି ।[୧] ଅବଶ୍ୟ ସେ କହିଛନ୍ତି ଯେ ସଂସ୍କୃତି କ୍ଷେତ୍ରରେ ବାଡ଼ ପକେଇବା ସବୁବେଳେ ସମ୍ଭବ ନୁହେଁ, କିନ୍ତୁ ତାଙ୍କ ମତରେ ଭାରତୀୟ ସଂସ୍କୃତି ସର୍ବେକ୍ଷଣରେ ବଡ଼ ଓ ସାନ ପରମ୍ପରା ଭେଦ ସ୍ୱୀକରଣୀୟ ।

ଯେଉଁମାନେ ଏହି ବିଭାଗ ସ୍ୱୀକାର କରନ୍ତି ସେମାନେ ସଂସ୍କୃତ, ଲୋକଭାଷା, ଉଚ୍ଚଜାତି, ଉଚ୍ଚେତର ଜାତି, ଲିଖିତ ସାହିତ୍ୟ, ମୌଖିକ ସାହିତ୍ୟ, ଭାରତୀୟ; ଆଞ୍ଚଳିକ ଭିତରେ ଦ୍ୱନ୍ଦ୍ୱ ଦେଖିଥାନ୍ତି । କିନ୍ତୁ ଦ୍ୱନ୍ଦ୍ୱ ମଧ୍ୟରେ

---

୧ । ଏ. କେ. ରାମାନୁଜନ **Speaking of Siva. Penguin 14.**

ଯେ କେବଳ ବିରୋଧ ନାହିଁ, ସମାନ୍ତର ମଧ୍ୟ ଅଛି ଏ କଥା ଯେମାନେ ଭୁଲି ଯାନ୍ତି । ଆଞ୍ଚଳିକ ବ୍ୟକ୍ତି ଯେ ସବୁ ଭାରତୀୟ ନାହିଁ ଓ ସବୁ ଭାରତୀୟଙ୍କ ମଧ୍ୟ ବିଭିନ୍ନ ଅଞ୍ଚଳରେ ଭିନ୍ନ ପୋଷାକ ପିନ୍ଧେ ଏକଥା ସେମାନେ ଦେଖି ମଧ୍ୟ ଦେଖନ୍ତି ନାହିଁ । ଭାରତବର୍ଷରେ ଲୋକ ଓ ବେଦ ମଧ୍ୟରେ ଯେଉଁ କୁଟୁମ୍ବିତା ଅଛି, ତାହା ମହନ୍ତକ ଅନ୍ୟତ୍ର ଦେଖିବାକୁ ମିଳେ ନାହିଁ । ଏଠି ଲୋକ ଓ ବେଦ ଉଭୟରେ ପ୍ରଥିତ ନୋହିଲେ ପୁରୁଷୋତ୍ତମ ହେବା ମଧ୍ୟ ସମ୍ଭବ ନୁହେଁ । ଭାରତୀୟ ଭାଷା ସଂସ୍କୃତାଶ୍ରିତ ହୋଇ ଓ ସଂସ୍କୃତ ଲୋକାଶ୍ରିତକୁ ଆପଣାର ଅଙ୍ଗୀଭୂତ କରି ଏପରି ଏକ ବନ୍ଧନରେ ବାନ୍ଧି ହୋଇଛନ୍ତି ଯେ ପରସ୍ପର ମଧ୍ୟରେ ନାଡ଼ିର ଯୋଗ ଅଛି କହିଲେ ଅତ୍ୟୁକ୍ତି ହେବନାହିଁ । ପୁଣି ସଂସ୍କୃତରେ ଯେପରି ବେଦ ପୁରାଣରେ ପରିପ୍ରକାଶ, ସେହିପରି ଲୋକବାର୍ତ୍ତା, ଲୋକଜ୍ଞାନର ମଧ୍ୟ ପରିପ୍ରକାଶ ଘଟିଛି । ଏଥିରେ ବଡ଼ ଓ ସାନ ଉଭୟ ପରମ୍ପରାର ସାହିତ୍ୟ ଦେଖିବାକୁ ମିଳେ । ସଂସ୍କୃତ ପରି ଲୋକଭାଷା ମଧ୍ୟ ଉଭୟର ବାହକ । ଲୋକବିଦ୍ୟା ଓ ଶାସ୍ତ୍ର ବିଦ୍ୟା, ଲୋକ ବ୍ୟବହାର ଓ ଶାସ୍ତ୍ର ଆଚାର ସବୁ ଲୋକଭାଷା ମାଧ୍ୟମରେ ମଧ୍ୟ ପ୍ରକାଶ ପାଇଛି । ଏଥିରୁ ଭାରତୀୟ ସଂସ୍କୃତି ବିଷୟରେ ବଡ଼ ଓ ସାନ ପରମ୍ପରା ଭେଦ ମାନ ନେବାରେ କାହିଁକି କୁଣ୍ଠା ସହଜେ ଦେଖିହେବ । ଉପନିଷଦରେ ଶୂଦ୍ରଧର୍ମ-ବଳରେ ନୀଚ ଜାତିର ଲୋକ ବ୍ରହ୍ମଜ୍ଞାନ ଲାଭ କରିଥିବାର ବହୁ ଗଳ୍ପ ଅଛି । ଭାରତରେ ଉଚ୍ଚ ଜାତି ଏବଂ ଉଚ୍ଚେତର ଜାତି ଉଭୟେ ବଡ଼ ଓ ସାନ ପରମ୍ପରାର ସ୍ରଷ୍ଟା ଓ ଭୋକ୍ତା ଏ କଥା ନ ଜାଣିଲେ ଭାରତୀୟ ସଂସ୍କୃତି ସମ୍ପର୍କୀୟ ଜ୍ଞାନ ଅପୂର୍ଣ୍ଣ କହିଲେ ଅତ୍ୟୁକ୍ତି ହେବନାହିଁ ।

ଲୋକଜ୍ଞାନ ପରମ୍ପରା ସାନ ପରମ୍ପରା ନୁହେଁ । ଦର୍ଶନର କଠିନ ସୂତ୍ର, ଜୀବନ-ରସ-ଘନ ଅନୁଭୂତି ସାର, ମିତ ବଚନରେ ଏଥିରେ ପ୍ରକାଶ ପାଇଥାଏ । ଲୋକ ମୁହଁର କଥା ସଂସ୍କୃତାଶ୍ରିତ ହେଲା ବେଳେ ଓ ସଂସ୍କୃତ କଥା ଲୋକ ଭାଷାରେ ପ୍ରକାଶ ପାଇବାବେଳେ ତହିଁରେ କାଳ, ପ୍ରସଙ୍ଗ, ରଚନା ଓ ରଚୟିତା ମନର ପୁଟ ଲାଗେ । ଏହା ଫଳରେ ଉଭୟ ସଂସ୍କୃତ ଓ ଲୋକଭାଷା ପୁଷ୍ଟ ହୁଏ । ବାଲ୍ମୀକି ରାମାୟଣ ହେଉ ବା ଦାଣ୍ଡି ରାମାୟଣ ହେଉ, ବ୍ୟାସ ଭାରତ ହେଉ କି ସାରଳା ଭାରତ ହେଉ ଉଭୟରେ ସମୁଚ୍ଚ ଦର୍ଶନ ଓ ଲୋକ ଦର୍ଶନର ସମନ୍ୱୟ ଘଟିଛି; ଲୋକ କାହାଣୀ, ଲୋକ ବାର୍ତ୍ତା ଓ ଲୋକ ବଚନ ସାଙ୍ଗରେ ଶିଷ୍ଟ ବଚନ ମିଶି ରହିଛି । ପ୍ରସ୍ତୁତ ବଚନ ଗୁଡ଼ିକରେ ଶୈବ ସିଦ୍ଧାନ୍ତର ଦକ୍ଷିଣୀ ବସ୍ତୁର ଅତି ସରଳ, ସୁବୋଧ୍ୟ ଭାବରେ ପ୍ରକାଶ ପାଇଛି ।

ଭାରତର ଶୈବ ଧର୍ମର ତିନୋଟି ମୁଖ୍ୟ ଗୋଷ୍ଠୀ ସୂଚିତ କରେ । କାଶ୍ମୀରୀ ଶୈବଧର୍ମ (ପ୍ରତ୍ୟଭିଜ୍ଞା), ବୀର ଶୈବ (ଦକ୍ଷିଣ ଶୈବ ସମ୍ପ୍ରଦାୟ) ଓ ଗୁଜୁରାଟୀ ଶୈବ (ପାଶୁପତ ସମ୍ପ୍ରଦାୟ) ଯଥାକ୍ରମେ ଉତ୍ତର ଭାରତ, ଦକ୍ଷିଣ ଭାରତ ଓ ପଶ୍ଚିମ ଭାରତରେ ଲୋକପ୍ରିୟ । ଚତୁର୍ଥ ଶୈବ ସମ୍ପ୍ରଦାୟ ପୂର୍ବ ଭାରତର ଓଡ଼ିଶାରେ । ଓଡ଼ିଶାରେ ସଂସ୍କୃତିର ଅନ୍ୟାନ୍ୟ ବିଭିନ୍ନ ଧର୍ମ କ୍ଷେତ୍ରରେ ମଧ୍ୟ ସମନ୍ୱୟ ଘଟିଛି । ଏଠି ଶିବ 'କମଳାପତି ସେବିତ' ପୁଣି 'ଜଗନ୍ନାଥ ଆସନ ସୁହୃଦ' । ତୁଳସୀ ଦାସଙ୍କ ବିନୟ ପତ୍ରିକା ୧,୨ । ଉତ୍ତରର ବ୍ରହ୍ମା ଓ ବିଷ୍ଣୁ ଶିବଙ୍କ ଦାସ ରୂପେ ସ୍ୱୀକୃତ ହୋଇଥିବା ସ୍ଥଳେ ଶିବ କେବଳ 'ବ୍ରହ୍ମା ବିଷ୍ଣୁ ଚରଣ ବନ୍ଦିତ' ନୁହନ୍ତି 'ନୀଳାଚଳ ପତି ନମିତ ପଦଦ୍ୱୟ' ମଧ୍ୟ । ଭାରତର ବିଭିନ୍ନ ଅଞ୍ଚଳର କର୍ତ୍ତା ଓ ଈଶ୍ୱର ଓଡ଼ିଶାରେ ଲିଙ୍ଗରାଜ ଓ ଭୁବନେଶ୍ୱର । କିନ୍ତୁ ଏଠି ଅନ୍ୟ ଧର୍ମର ସଂଘର୍ଷରେ ଶିବଙ୍କ ପ୍ରାଧାନ୍ୟ ଓ ପ୍ରତିପତ୍ତି ପ୍ରତିଷ୍ଠା କରିବା ଅପେକ୍ଷା ଅନ୍ୟ ଧର୍ମର କେନ୍ଦ୍ର ସ୍ଥଳରେ ଯୋଗାଧିପତି ଶିବଙ୍କୁ ପ୍ରତିଷ୍ଠା କରିବା ଚେଷ୍ଟା ହୋଇଛି ।

ଓଡ଼ିଶାର ଧର୍ମ ଓ ସାଂସ୍କୃତିକ ଇତିହାସ ଅଧ୍ୟୟନ କଲେ ଦେଖାଯିବ ଯେ ଖ୍ରୀଷ୍ଟ ଜନ୍ମରୁ ୧୪ଶ ଶତକ ପର୍ଯ୍ୟନ୍ତ ଶୈବ ଧର୍ମର ଅଖଣ୍ଡ ପ୍ରତିପତ୍ତି ଥିଲା ।୩ ଆଜି ମଧ୍ୟ ଭୁବନେଶ୍ୱର ଭାରତର ଏକମାତ୍ର ଧର୍ମକ୍ଷେତ୍ର ଯେଉଁଠି ୭ମରୁ ୧୩ଶ ଶତକ ମଧ୍ୟରେ ନିର୍ମିତ ଶିବ ମନ୍ଦିରମାନ ବିଦ୍ୟମାନ ଅଛି । ଏହି ସ୍ଥଳେ ଓଡ଼ିଶାରେ ଦକ୍ଷିଣୀ ବଚନ ସାହିତ୍ୟ ହେଉ କିମ୍ବା ପ୍ରତ୍ୟଭିଜ୍ଞା ଓ ପାଶୁପାତ ଦର୍ଶନ ମାନଙ୍କର ରଚନା ହେଉ, କାହାରି ପ୍ରଚାର ଓ ପ୍ରସାର ନ ହୋଇଥିବାରେ ଆଶ୍ଚର୍ଯ୍ୟ ଲାଗିବାର କଥା । କିନ୍ତୁ ଓଡ଼ିଶାରେ ଶୈବ, ଶାକ୍ତ, ଅର୍ବାଚୀନ ବୌଦ୍ଧ ଓ ତନ୍ତ୍ରଯୋଗ ଏକାଠି ହେବା ଫଳରେ ଅଷ୍ଟାଙ୍ଗ ଯୋଗ, ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ, ଷଟ୍‌ଚକ୍ର ନିରୂପଣ, କାୟାକଳ୍ପ ଓ ନାଦବିନ୍ଦୁ ବିଷୟରେ ଯେଉଁ ପରିଭାଷାର ବ୍ୟବହାର ହୋଇଥିଲା ତା ପାଖରେ ବଚନକାରଙ୍କ ଭାଷାରେ କୌଣସି ନୂତନତା ନଥିଲା । ସମ୍ଭବତଃ ଏଇଥିପାଇଁ କଳିଙ୍ଗ ଓ କର୍ଣ୍ଣାଟକ ମଧ୍ୟରେ ବିଶେଷ ସାଂସ୍କୃତିକ ସମ୍ପର୍କ ସତ୍ତ୍ୱେ ଓଡ଼ିଶାରେ ବଚନକାରଙ୍କ ରଚନାର ପ୍ରସାର ଦେଖିବାକୁ ମିଳେ ନାହିଁ ।

ଈଶ୍ୱର, ଆତ୍ମା ଓ ପୃଥିବୀ ଉପରେ ପ୍ରାଧାନ୍ୟ ଦେଇ ଆପଣା ତତ୍ତ୍ୱର ଉପସ୍ଥାପନ କରିଥିବାରୁ ପ୍ରତ୍ୟଭିଜ୍ଞା ପରମ୍ପରାକୁ ତ୍ରିକ କୁହାଯାଏ । ଉତ୍ତର ପଶ୍ଚିମ ଓ ଦକ୍ଷିଣ ପରମ୍ପରାରେ ଏହି ତିନି ଅଙ୍ଗ ଉପରେ ବିଭିନ୍ନ ଭାବରେ ପ୍ରାଧାନ୍ୟ

---

୨ । ଜୟଦେବ ସିଂହ ଠାକୁର ସମ୍ପାଦିତ ଓ ଅନୁଦିତ ପ୍ରତ୍ୟଭିଜ୍ଞା ହୃଦୟ ଦ୍ରଷ୍ଟବ୍ୟ ।

୩ । ବଂଶୀଧର ମହାନ୍ତି, ସରଳା ସାହିତ୍ୟ, ଫ୍ରେଣ୍ଡସ୍ ପବ୍ଲିସର୍ସ, କଟକ ୧୯୬୦, ପୃ ୩୬୪—୩୭୦ ।

ଦିଆଯାଇଛି । ବୀର ଶୈବ ପରମ୍ପରାରେ ଲିଙ୍ଗ ଓ ଅଙ୍ଗ ମଧ୍ୟରେ ସମ୍ପର୍କ ବଡ଼କଥା । ଲିଙ୍ଗର ଛ'ସ୍ଥଳ (ବିଭବ) ଓ ଅଙ୍ଗର ଛ'ସ୍ଥିତି ମଧ୍ୟରେ ସମ୍ପର୍କ ଦର୍ଶାଇ ଈଶ୍ୱର ଓ ଆତ୍ମାର ଅଭିନ୍ନତା ଉପରେ ପ୍ରତିଷ୍ଠା କରାଯାଇଛି, ତାହା ଏ. କେ. ରାମାନୁଜନଙ୍କର ନିମ୍ନଲିଖିତ ଦୁଇଟି ଚିତ୍ରରୁ ସ୍ପଷ୍ଟ ହେବ । ୪ ଏଥିରେ ମଧ୍ୟ ପୃଥିବୀ, ଆତ୍ମା ଓ ଈଶ୍ୱର ଉପରେ ପରସ୍ପର ସନ୍ଧି ସମ୍ପର୍କିତ ସହଜେ ଦେଖାଯାଇ ପାରିବ ।







୪ । ଏ. କେ. ରାମାନୁଜନ, ଏନ୍ନ, ପୃ ୧୭୦ – ୧୭୧ ।

କନ୍ନଡ଼ ବଚନ 'ଅନୁଭବ' ରଚନା । ବ୍ୟକ୍ତିଗତ ଠାକୁରଙ୍କ ପାଖରେ ହୃଦୟ ନିବେଦନ ଓ ଆତ୍ମସମର୍ପଣ ଏଇସବୁ ରଚନାର ମୁଖ୍ୟସ୍ୱର । ବଚନ କବିମାନେ ଏକପକ୍ଷରେ ଯେପରି ବୈଦିକ ପରମ୍ପରାର ବିରୋଧୀ ସେମାନେ ଲୌକିକ ଆଚାରର ବି ସେହିପରି ବିରୋଧୀ । ବଚନକାରଙ୍କ ପାଇଁ ପବିତ୍ର ଦିନ ନାହିଁ, ପବିତ୍ର ସମୟ ନାହିଁ, ପବିତ୍ର କାଳ ନାହିଁ କି ପବିତ୍ର ପାଞ୍ଜି ନାହିଁ । ବନାରସ ଗଲେ ଶିବତ୍ୱ ପ୍ରାପ୍ତି । ଥରେ ଶିବତ୍ୱ ପ୍ରାପ୍ତି ହେଲେ ସମସ୍ତ ବିରୋଧର ନିରସନ । ବସବାନ୍ନାଙ୍କ ମତରେ ଠାକୁର ସବୁଥିରେ ଓ ସବୁଠାରେ । ପାଦ ପକାଇବାକୁ ଯାଗା ନାହିଁ । କିନ୍ତୁ ପ୍ରକୃତରେ କେଇ ଟିଏ ମାତ୍ର ଠାକୁର କୁଣ୍ଡଳ ସଙ୍ଗମ ଦେବ ।

ପୂଜା, ଅର୍ଚ୍ଚନା, ତୀର୍ଥଯାତ୍ରା, ମନ୍ଦିରକୁ ଯିବା, ପୁରୋହିତ, ପ୍ରାର୍ଥନା ଓ ମାନସିକ କରିବା, ଯାହା ଇହକାଳ ବା ପରକାଳର ଫଳପ୍ରାପ୍ତିର ଉଦ୍ଦେଶ୍ୟ ହେ. ତାହା ବଚନକାରଙ୍କ ପକ୍ଷରେ ବିଷ । ପୁରୁଣା ବିଶ୍ୱାସ, ମୂର୍ତ୍ତିପୂଜା, ଜାତିପ୍ରଥା, ବଳିଦାନ ଓ ଅନ୍ୟାନ୍ୟ ସାମାଜିକ ଆଚାର ଓ ସଂସ୍କାର ଯାହା ପରକାଳର ମୁକ୍ତି ପାଇଁ ଏ କାଳର ମୂଲ୍ୟବାନ, ବଚନକାର ମାନେ ତାକୁ ଘୃଣା କରିଛନ୍ତି ଓ ଥଟ୍ଟା କରିଛନ୍ତି । ଭଲକାମ କଲେ, ଭଲକଥା ଚିନ୍ତା କଲେ ଯେ ଈଶ୍ୱର ଲାଭ ହେବ, ବଚନକାର ମାନେ ଏଥିରେ ବିଶ୍ୱାସ କରନ୍ତି ନାହିଁ । କରିବା, ଜାଣିବା ଓ ହେବା ମଧ୍ୟରେ ପାର୍ଥକ୍ୟକୁ ବଚନକାର ସୁନ୍ଦର ଭାବରେ ଫୁଟାଇଛନ୍ତି ।

ଦରିଦ୍ର ଭୋଜନ,
ସତ୍ୟ କଥନ,
କୂପ ଖନନ,
ସହର ପାଇଁ
ଜଳାଶୟ ନିର୍ମାଣ,

ମରଣ ପରେ ସ୍ୱର୍ଗକୁ ବାଟ ହୋଇ ପାରେ । କିନ୍ତୁ ପ୍ରଭୁଙ୍କ ବିଷୟରେ ସତ୍ୟ ଜ୍ଞାନଠାରୁ ଦୂରରେ

ଯେ ପ୍ରଭୁଙ୍କୁ ଜାଣେ
ତା'ର ଫଳପ୍ରାପ୍ତି ନାହିଁ
ଆଲ୍ଲାମ ୯୫୯

ପ୍ରଭୁପ୍ରାପ୍ତି ପାଇଁ ପ୍ରଭୁକୃପା ପ୍ରୟୋଜନ । 'ଯମେ ବୈଷ ବୃଣୁତେନ ଲଭ୍ୟଂ' । ସେ ଇଚ୍ଛା ନ କଲେ ତାଙ୍କୁ ପାଇବା ଅସମ୍ଭବ । ସେ କୃପା ନିର୍ଦ୍ଦିଷ୍ଟ ଭାବରେ ନାହିଁ । ଲକ୍ଷ୍ମଦେଇ, ପାଞ୍ଜି ଗଣି, ଦିନ, ବାର, ବାର ଠିକ କରି ତାଙ୍କୁ

ପାଇବା ସମ୍ଭବ ନୁହେ । ତେଣୁ ଅନ୍ତଃକରଣ ଶୁଦ୍ଧିକରି, ବିଷୟ ତ୍ୟାଗ କରି 'କରିବା' ରୁ 'ହେବା' ବାଟରେ ଗତି କରିବାକୁ ବଚନକାର ମାନେ ଉପଦେଶ ଦେଇଛନ୍ତି ।

ଏଠି 'ଅନୁଭବ' ଶବ୍ଦ ବିଷୟରେ ପଦେ କହି ରଖିବା ପ୍ରୟୋଜନ । ଏହି ଶବ୍ଦଟି ଏକ ଅର୍ଥରେ ବଚନକାରଙ୍କର ପ୍ରୟୋଗ । ଭାବରୁ ଅନୁକାଶ ରୂପେ ରସ ନିଷ୍ପତ୍ତି ବିଷୟରେ ଅନୁଭବ ଶବ୍ଦର ବ୍ୟବହାର ସର୍ବ ବିଦିତ । କିନ୍ତୁ ଯେଉଁ ସ୍ୱତନ୍ତ୍ର ଅର୍ଥରେ ବଚନକାର ମାନେ ଏହାର ବ୍ୟବହାର କରିଛନ୍ତି ଇଂରାଜୀରେ ଏହାର ନିକଟତମ ପ୍ରତିଶବ୍ଦ ହେଉଛି **Mystic** । ଭବ ଓ ଭାବର ପଶ୍ଚାତରେ ଯେଉଁ ଅଲୌକିକ ମାନସଭୂମି, ତାହାହିଁ ଅନୁଭବ କ୍ଷେତ୍ର । ଏହି ଅନୁଭବ ସିଦ୍ଧ ରଚନା ଗୁଡ଼ିକ କବିତା ନୋହିଲେ ମଧ୍ୟ କବିତାଧର୍ମୀ । କବିତା ପରି ଏଥିରେ ଯତିପାତ, ଉପଧା ମିଳନ ଆଦି ନ ଥିଲେ ସୁଦ୍ଧା ଏହାର ଅନ୍ତର୍ନିହିତ ଛନ୍ଦ ଓ ସୂକ୍ଷ୍ମାତ୍ମକତା ଏହାକୁ କବିତାଧର୍ମୀ କରିଥାଏ ।

ବୀର ଶୈବ ସନ୍ଥମାନେ ଶବ୍ଦ ଉପରେ ପ୍ରାଧାନ୍ୟ ଦେଇଛନ୍ତି । ଆଲ୍ଲମ ପ୍ରଭୁଙ୍କ ମତରେ ଶବ୍ଦ ହିଁ ଜ୍ୟୋତିଲିଙ୍ଗ । ଏହି ଶବ୍ଦ ଉଭୟ ସତ୍ୟ ଓ ଅସତ୍ୟର ଆଧାର । ଷଣ୍ମୁଖ ସ୍ୱାମୀ କହିଛନ୍ତି ଯେ, ସତ୍ୟରେ ଶିବଙ୍କର ବାସ, ଅସତ୍ୟରେ ଶିବ ନାହାନ୍ତି । ଏହି କଥାକୁ ବୁଝାଇବାକୁ ଯାଇ ବସବାନ୍ନା କହନ୍ତି, ଯେଉଁମାନେ କଥାରେ ସାବଧାନ କାମରେ ଖସଡ଼ା ଏପରି ଲୋକଙ୍କ ପାଇଁ ପାଖରେ ଥିବା ଲିଙ୍ଗ ପଞ୍ଚସର୍ପ । ପୁଣି "ଆୟ୍'ଏନ୍ଦେରେ ସ୍ୱର୍ଗ, ଏଲବୋ ଏନ୍ଦେରେ ନର୍କ," ଅର୍ଥାତ ଆପଣ କହିଲେ ସ୍ୱର୍ଗ, ତୁକାରରେ ନର୍କ । ଏଠି ଦୈନନ୍ଦିନ ଭାଷା ବ୍ୟବହାରରେ ଶୁଚିତା ପ୍ରତି ଲକ୍ଷ୍ୟ କରାଯାଇଛି । ଶବ୍ଦର ଗୁରୁତ୍ୱ ବୁଝାଇବାକୁ ଯାଇ ବସବାନ୍ନା ପୁଣି କହିଛନ୍ତି, "ମୃଦୁ ବଚନବେ ଜପ । ମୃଦୁ ବଚନବେ ତପ ।" କଟୂବଚନ ମନରେ ଶାନ୍ତି ଓ ସାମ୍ୟ ନଷ୍ଟ କରେ । ବଚନକାରଙ୍କ ମତରେ ବାହାରର ରାଗ ମର୍ଯ୍ୟାଦା ହାନି କରେ । ଭିତରର ରାଗ ଜ୍ଞାନ ଭ୍ରଷ୍ଟ କରେ । ଦେସାଧନା! ତେଣୁ ଶିବଭକ୍ତ ପକ୍ଷରେ ଏକ ପ୍ରଧାନ କଥା । ଚିତ୍ତଶୁଦ୍ଧି ନ କରି କେବଳ ଗୋହେଶ୍ୱର ନାମ ଉଚ୍ଚାରଣରେ ଫଳ ନାହିଁ । ଶବ୍ଦ ଓ ଅଶବ୍ଦର ଅଦ୍ୱୈତ ସମ୍ବନ୍ଧ ଭକ୍ତ ଓ ଲିଙ୍ଗର ଆଧ୍ୟାତ୍ମିକ ମିଳନ ସହ ତୁଳନୀୟ । ଏହି ଆଧ୍ୟାତ୍ମିକ ଉପଲବ୍ଧିରେ ବାକ୍-ଶରଣ ପ୍ରାଣଲିଙ୍ଗ ଓ ଜ୍ୟୋତିଲିଙ୍ଗରେ ଅଭେଦତ୍ୱ ଦେଖିଲାପରି ଶବ୍ଦ ଓ ଅଶବ୍ଦ ଶୂନ୍ୟତା ମଧ୍ୟରେ ଅଦ୍ୱୈତ ସମ୍ବନ୍ଧ ପ୍ରତ୍ୟକ୍ଷ କରନ୍ତି । ଆକ୍କା ମହାଦେବୀଙ୍କ ମତରେ ଆଧ୍ୟାତ୍ମିକ ମିଳନର ପରିଣାମ ବାକ୍‌ଶୂନ୍ୟତା । ପୁଣି ସୃଷ୍ଟି ପୂର୍ବରୁ ଆଦି, ଆନାଦି

ଦ୍ୱୈତ, ଅଦ୍ୱୈତ, ନାମ, ରୂପ, ସୃଷ୍ଟି ପୂର୍ବରୁ ଶବ୍ଦଶୂନ୍ୟତାର କଳନା କରି ମାଣ୍ଡୁବାଲା ମାହ୍ନଦେବ ଯେଉଁ ବଚନ ରଚନା କରିଛନ୍ତି, ତାହା ମଧ୍ୟ ଏ କ୍ଷେତ୍ରରେ ସ୍ମରଣୀୟ । ବାଇବେଲରେ ଶବ୍ଦ ବା ବୈଦିକ ସାହିତ୍ୟର ଓଁକାର ସହିତ ବଚନକାରଙ୍କ ଶବ୍ଦ ସୃଷ୍ଟିର କଳନାକୁ ତୁଳନା କରାଯାଇପାରେ । ଚନ୍ନ ବାସବାଣ୍ଣା କହିଛନ୍ତି ଯେ, 'ଶବ୍ଦର ପାହାଚ ଚଢ଼ି ଆଗ କରି ପୁରାତନ ମାନେ ଦେବଲୋକକୁ ବାଟ କରିଛନ୍ତି ।' ତେଣୁ ବେଦ ଶୂନ୍ୟତାରୁ ସୃଷ୍ଟି ବେଦର ପାହାଚ ବଚନରେ ଅନୁଭବ ଓ ଶବ୍ଦ ଶୂନ୍ୟତାରେ ଦ୍ୱୈତା ଦ୍ୱୈତର ପରିସମାପ୍ତି, — ଏହାହିଁ ବଚନକାର ମାନଙ୍କର ବାଣୀ । ଏହି ଶବ୍ଦରେ ଅପବିତ୍ରତା ନାହିଁ, ମଳିନତା ନାହିଁ । ଶବ୍ଦରେ ଅଶବ୍ଦ ପରି ଭକ୍ତ ଓ ଭଗବାନଙ୍କ ମଧ୍ୟରେ କୁଣ୍ଠମୁକ୍ତିତା । ବୀର ଶୈବ ସମ୍ପ୍ରଦାୟରେ ଲିଙ୍ଗ ଓ ଅଙ୍ଗର ଷଟସ୍ଥଳ ବିଚାର ପ୍ରଧାନ କଥା । କିନ୍ତୁ ଓଡ଼ିଶାରେ ପିଣ୍ଡ ମଧ୍ୟରେ ବ୍ରହ୍ମାଣ୍ଡ ଓ ପିଣ୍ଡ ମଧ୍ୟରେ ଷଟ୍-ଚକ୍ରର ଅବଧାରଣା କରି କୁଣ୍ଡଳିନୀକୁ ଜାଗ୍ରତ କରି ସହସ୍ରାରରେ ଶିବଙ୍କ ସହିତ ଏକା ହେବା ହେଉଛି ମୂଳକଥା ।

ଯୋଗ ଓଡ଼ିଶୀ ଧର୍ମ ପରମ୍ପରାର ଏକ ଅବିଚ୍ଛିନ୍ନ ଅଙ୍ଗ । ଯୋଗତତ୍ତ୍ୱ ଉପନିଷଦରେ ହଠଯୋଗ, ମନ୍ତ୍ରଯୋଗ, ରାଜଯୋଗ ଓ ଲୟଯୋଗର ଉଲ୍ଲେଖ ଥିଲେ ହେଁ ଏହାର ସୁଶୃଙ୍ଖଳ ବିଚାର ନହୋଇଥିବା ହେତୁ ଓ ପତଞ୍ଜଳି ଯୋଗର ଶୃଙ୍ଖଳାବଦ୍ଧ ବିଚାର କରିଥିବାରୁ ଏହାଙ୍କୁ ଯୋଗଶାସ୍ତ୍ରର ଜନକ ରୂପେ ଗ୍ରହଣ କରାଯାଏ । ପତଞ୍ଜଳି ଯୋଗ ୪ ପାଦ ବିଶିଷ୍ଟ, ସମାଧି ପାଦ, ସାଧନ ପାଦ ବିଭୂତି ପାଦ ଓ କୈବଲ୍ୟ ପାଦ ।

ସମାଧି ପାଦ ଦ୍ୱିବିଧ - ସମ୍ପ୍ରଜ୍ଞାତ ସମାଧି ଓ ଅସମ୍ପ୍ରଜ୍ଞାତ ସମାଧି ।

ଦୃଶ୍ୟ ଜଗତ ଈଶ୍ୱର ବିକାର ମାତ୍ର । ଅନ୍ୟ ନାମ ବର୍ତ୍ତିମାନ ଚିତ୍ତ । ପ୍ରମାଣ, ବିପର୍ଯ୍ୟୟ, ବିକଳ୍ପ, ନିଦ୍ରା ଓ ସ୍ମୃତି ଭେଦରେ ଏହାର ବୃତ୍ତି ପଞ୍ଚବିଧ । ଯେତେବେଳେ ବାହ୍ୟ ବସ୍ତୁ ସମୂହ ବୃତ୍ତିପଥକ ଭିନ୍ନ ଅନ୍ୟ କିଛି ନୁହେଁ ବୋଲି ଧାରଣା ଜନ୍ମେ, ସେତେବେଳେ ଚିତ୍ତର ଅବସ୍ଥାକୁ ସମ୍ପ୍ରଜ୍ଞାନ ସମାଧି କୁହାଯାଏ । ବିତର୍କ, ବିଚାର, ଆନନ୍ଦ, ଅସ୍ମିତା ଭେଦରେ ଏହା ଚତୁର୍ବିଧ ।

ପ୍ରତ୍ୟେକ ଚିତ୍ତବୃତ୍ତିକୁ ଗୋଟି ଗୋଟି କରି ନିରୋଧ କରି ସମସ୍ତ ବୃତ୍ତିର ଅଭାବ ଅଭ୍ୟାସ କରିବା ଅସମ୍ପ୍ରଜ୍ଞାନ ସମାଧି । ଏଥି ନିମିତ୍ତ ବ୍ୟକ୍ତି, ଶ୍ରଦ୍ଧା, ବୀର୍ଯ୍ୟ, ସ୍ମୃତି, ପ୍ରଜ୍ଞା ସହ ଅଗ୍ରସର ହେବା ପ୍ରୟୋଜନ । ଫଳାକାଂକ୍ଷା ତ୍ୟାଗ କରି ଈଶ୍ୱରଙ୍କ ଠାରେ ଚିତ୍ତ ସମର୍ପଣ କରି, ପ୍ରାଣାୟମ ସହ ସମାଧିସ୍ଥ ହେଲେ ଚିତ୍ତ

ବିକ୍ଷେପ ଦୂର ହୋଇ ପ୍ରଜ୍ଞାର ଉଦୟ ହୁଏ । ପ୍ରଜ୍ଞାରୁ ସତ୍ୟ ଓ ନିରପେକ୍ଷତା ଜନ୍ମେ ।

ସାଧନ ପାଦ ହେଉଛି କର୍ମଯୋଗ । ଉପବାସ, ଆଧ୍ୟାତ୍ମିକ ଗ୍ରନ୍ଥର ଅଧ୍ୟୟନ, ଯାଜ୍ଞବାଦ ଇଚ୍ଛା ମନ୍ତ୍ରର ଜପ ଏବଂ ଫଳାକାଂକ୍ଷା ବର୍ଜିତ ହୋଇ ଈଶ୍ୱରଙ୍କ ଠାରେ ସକଳକର୍ମ ସମର୍ପଣ ପ୍ରଭୃତି ଯୋଗମାର୍ଗରେ କ୍ରିୟା-ଯୋଗ । ଯୋଗ ସାଧନା ଦ୍ୱାରା ଅବିଦ୍ୟା, ଅସ୍ମିତା, ଦ୍ୱେଷ, ରାଗ ଅଭିନିବେଶ ରୂପ ପଞ୍ଚବିଧ କ୍ଲେଶରୁ ମୁକ୍ତି ଲାଭ କରି ଅନନ୍ତର ଅଧିକାରୀ ହେବା ସମ୍ଭବ ।

ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧ୍ୟାନ, ଧାରଣା, ସମାଧି ହେଉଛି ଯୋଗର ଅଷ୍ଟଅଙ୍ଗ । ଏଥିରୁ ପ୍ରଥମ ପାଞ୍ଚଟି ସାଧନପାଦରେ କ୍ରିୟାଙ୍ଗ ଓ ଶେଷ ତିନୋଟି ବିଭୂତି ପାଦର ଅନ୍ତର୍ଭୁକ୍ତ । ଧ୍ୟାନ, ସଗୁଣ ଓ ନିର୍ଗୁଣ ଭେଦରେ ସାକାର ବିରାଜିତ ପରମାତ୍ମା ସାଧକ ହୃଦୟରେ ଜ୍ୟୋତି ରୂପେ ଅବସ୍ଥିତ । ଏହି ଅନୁଭବ ସଗୁଣଧ୍ୟାନ । ଏହା ଭିନ୍ନ ଧ୍ୟାନ ନିର୍ଗୁଣ । ଆତ୍ମା ପରମାତ୍ମାର ଏକତ୍ୱରେ ସମାଧି । ଏହା ସବିକଳ୍ପକ ଓ ନିର୍ବିକଳ୍ପକ ଭେଦରେ ଦ୍ୱିବିଧ । ସବିକଳ୍ପକ ସମାଧିରେ ସଂସାରର ସଂସ୍କାର ପୂର୍ଣ୍ଣ ଭାବରେ ନିବୃତ୍ତ ହୋଇ ନଥାଏ । ନିର୍ବିକଳ୍ପକ ସମାଧିରେ ସାଧକର ବାହ୍ୟ ସଂସାରର ସମସ୍ତ ଜ୍ଞାନ ଲୁପ୍ତ ହୁଏ ।

ବିଭୂତି ପାଦରେ ଯୋଗ ଫଳର ଉଲ୍ଲେଖ ଅଛି । ଯୋଗୀ ଅଣିମା, ମହିମା ଲଘିମା, ପ୍ରାପ୍ତି, ପ୍ରାକାମ୍ୟ, ଈଶିତ୍ୱ, କାମାବସାୟିତ୍ୱ ଲାଭ କରିପାରେ । ଏଗୁଡ଼ିକୁ ଐଶ୍ୱର୍ଯ୍ୟ କୁହାଯାଏ । କିନ୍ତୁ ଏହି ଐଶ୍ୱର୍ଯ୍ୟ ଲାଭରେ ମୋକ୍ଷ ନାହିଁ ।

କୈବଲ୍ୟପାଦ ବୁଦ୍ଧି କଳ୍ପିତ ନିର୍ବାଣ ତତ୍ତ୍ୱ ସମାନ, ଏହି ସ୍ଥିତିରେ ଯୋଗୀର ସୁଖ ଦୁଃଖ, ଶୀତ ଉଷ୍ଣ, ପ୍ରବୃତ୍ତି ନିବୃତ୍ତିର ଦ୍ୱୈତ ଧାରଣା ରହେ ନାହିଁ ।

ପାତଞ୍ଜଳ ଯୋଗ ଶାସ୍ତ୍ରରେ ପ୍ରାଣାୟାମର ବିଶେଷ ବିବରଣ ନାହିଁ । ପାତଞ୍ଜଳ ଯୋଗସୂତ୍ର ସଙ୍ଗେ ତନ୍ତ୍ରଶାସ୍ତ୍ର ମିଳିତ ହୋଇ 'କାୟବ୍ୟୂହ' ବା 'ଶରୀର ଭେଦ' ନାମକ ଏକ ସାଧନାର ସୂତ୍ରପାତ ହେଲା । ଯୋଗର ହଠଯୋଗ ବା ଘଟଯୋଗ ନାମକ ଏକ ଶାଖା ବାହାରିଲା । ହଠଯୋଗର ପ୍ରଧାନ ଆଚାର୍ଯ୍ୟ ମତ୍ସ୍ୟେନ୍ଦ୍ର ନାଥ ଓ ତାଙ୍କ ଶିଷ୍ୟ ଗୋରକ୍ଷନାଥ । ସଂସ୍କୃତରେ ଶରୀର ଭେଦ ଓ ହଠଯୋଗ ସମ୍ବନ୍ଧରେ ଶିବ ସଂହିତା, ଘେରଣ୍ଡ ସଂହିତା, ଅଷ୍ଟବକ୍ର ସଂହିତା, ଗୋରକ୍ଷ ସଂହିତା, ଷଟଚକ୍ର ଯୋଗାର୍ଣ୍ଣବ ଆଦି ବହୁ ଗ୍ରନ୍ଥ ଅଛି । ଏହା ମଧ୍ୟରୁ ଶିବ ସଂହିତା ସମସ୍ତ ଶୈବ ସମ୍ପ୍ରଦାୟରେ ବହୁମାନ୍ୟ ।

ଓଡ଼ିଆ ଚର୍ଯ୍ୟା ସାହିତ୍ୟ ୫ ନାଥ ସାହିତ୍ୟ ୬ ଭିତର ଦେଇ ଏହିସବୁ ଚିନ୍ତା କପରି ୧୬ଶ ଶତାବ୍ଦୀର ବୈଷ୍ଣବ ସାହିତ୍ୟକୁ ମଧ୍ୟ ଆଚ୍ଛନ୍ନ କରିଛି ଏହାହିଁ ଅଧ୍ୟୟନ କରିବ ବଚନ ସାହିତ୍ୟର ସାମାଜିକ ଓ ଧାର୍ମିକ ପୀଠିକା । ଅନେକ ପଣ୍ଡିତ ନାଥ ସିଦ୍ଧାଚାର୍ଯ୍ୟଙ୍କୁ ବୌଦ୍ଧ ବୋଲି କହିଛନ୍ତି । ପୁଣି ନାଗାର୍ଜୁନଙ୍କର ଶୂନ୍ୟ ପରବର୍ତ୍ତୀ କାଳରେ ସହଜରେ ପରିଣତ ହୋଇପରି ହିନ୍ଦୁ ତନ୍ତ୍ରର ଶିବଶକ୍ତି ବୌଦ୍ଧତନ୍ତ୍ରର ପ୍ରଜ୍ଞା ଓ ଉପାୟ ଏବଂ ପରବର୍ତ୍ତୀ ବଜ୍ରଯାନରେ ଶୂନ୍ୟତା ଓ କରୁଣା ରୂପେ ସ୍ୱୀକୃତ ହୋଇଥିଲି । ଏହି ସବୁର ସ୍ପଷ୍ଟ ରୂପ ସାରଳା, ପଞ୍ଚସଖା ଓ ଷୋଡ଼ଶ ଶତାବ୍ଦୀର ବିଭିନ୍ନ ଓଡ଼ିଆ ଲେଖକଙ୍କ ରଚନାରେ ଅଛି । ଅଚ୍ୟୁତାନନ୍ଦଙ୍କ ଶୂନ୍ୟ ସଂହିତା, ନନ୍ଦ ଦାସ, ଦ୍ୱାରକା ଦାସ, ଚନ୍ଦ୍ରମଣି ଦାସ, ଅରକ୍ଷିତ ଦାସଙ୍କର ଶରୀରଭେଦ ଓ ଷଟ୍‌ଯୋଗ ସମ୍ବନ୍ଧୀୟ ରଚନା ଏ କ୍ଷେତ୍ରରେ ବିଶେଷ ରୂପେ ମନକୁ ଆସେ ।

ଆତ୍ମତତ୍ତ୍ୱ ଉପଲବ୍ଧି ଯୋଗର ଏକମାତ୍ର ଉଦ୍ଦେଶ୍ୟ । ଚୈତନ୍ୟରୂପୀ କୁଣ୍ଡଳିନୀ ସମସ୍ତ ଶକ୍ତିର ମୂଳାଧାର । ଏହି ଶକ୍ତି ସାଧାରଣତଃ ସୁପ୍ତ ଅବସ୍ଥାରେ ଥାଏ । ଏହାକୁ ଜାଗ୍ରତ କରି ମସ୍ତକସ୍ଥିତ ସହସ୍ରାର ପଦ୍ମକୁ ପ୍ରେରଣ କରି ପାରିଲେ ଅମୃତର ଆସ୍ୱାଦ ମିଳେ ଓ ମାନବ ନିଜ ସ୍ୱରୂପ ଉପଲବ୍ଧି କରି ପରମାତ୍ମାରେ ଲୀନ ହୁଏ । ଏହି ପ୍ରସଙ୍ଗରେ ଷଡ଼ଚକ୍ର ବିଷୟର ଏକାନ୍ତ ପ୍ରୟୋଜନ । ଏହା ଲିଙ୍ଗର ସ୍ଥୂଳ ବସ୍ତୁର ଓ ଅଙ୍ଗର ସୋପାନ ବିଷୟରଠାରୁ ଭିନ୍ନ । ଶରୀର ମଧ୍ୟରେ ଛଅଟି ଚକ୍ର ଅବସ୍ଥିତ । ମୂଳାଧାର, ସ୍ୱାଧିଷ୍ଠାନ, ମଣିପୁର, ଅନାହତ, ବିଶୁଦ୍ଧାଖ୍ୟ ଓ ଆଜ୍ଞାକ୍ଷ ଯଥାକ୍ରମେ ମେରୁଦଣ୍ଡ ତଳେ ଗୁହ୍ୟଦ୍ୱାର ନିକଟରେ, ଲିଙ୍ଗ ମୂଳରେ, ନାଭିସ୍ଥାନରେ, ହୃଦୟ ପ୍ରଦେଶରେ କଣ୍ଠ ଦେଶରେ ଓ ଲଲାଟ ପ୍ରଦେଶରେ ଅବସ୍ଥିତ । ଆଜ୍ଞା ଚକ୍ରର ଊର୍ଦ୍ଧ୍ୱରେ ତାଳୁମୂଳରେ ସହସ୍ରାର ପଦ୍ମ । ଏହିଠାରୁ ବିବରଯୁକ୍ତ ସୁଷୁମ୍ନା ନାଡ଼ୀ ଆରମ୍ଭ ହୋଇଛି । ଏହିଠାରେ ଏହା ମେରୁଦଣ୍ଡ ତଳେ ନିମ୍ନମୁଖୀ ହୋଇ ସରଳରେଖା କ୍ରମେ ମୂଳାଧାର ପଦ୍ମ ପର୍ଯ୍ୟନ୍ତ ଯାଇଛି । ଏହାକୁ ବ୍ରହ୍ମନାଡ଼ୀ, ଶୂନ୍ୟପଦବୀ, ମହାପଥ କହନ୍ତି । ସୁଷୁମ୍ନାର ଶୀର୍ଷ ଦେଶରୁ ଗୋଟିଏ ନାଡ଼ୀ ବାହାରି ଆଜ୍ଞାଚକ୍ରର ବାମ ପାର୍ଶ୍ୱରେ ବୁଲି ବିଶୁଦ୍ଧ ଚକ୍ରର ନିମ୍ନ ଭାଗର ମଧ୍ୟବିନ୍ଦୁ ସ୍ପର୍ଶ କରି ସେଠାରୁ ଦକ୍ଷିଣ ପାର୍ଶ୍ୱରେ ଧନୁ ଆକାରରେ ବୁଲି ଅନାହତ ଚକ୍ରର ନିମ୍ନ ଭାଗର ମଧ୍ୟବିନ୍ଦୁକୁ ସ୍ପର୍ଶ କରିଛି । ଏହାକୁ ଇଡ଼ା ନାଡ଼ୀ କହନ୍ତି । ଆଉ ଗୋଟିଏ ନାଡ଼ୀ ଆଜ୍ଞାଚକ୍ରର ଦକ୍ଷିଣରେ ବିଶୁଦ୍ଧ ଚକ୍ରର ବାମରେ

---

୫ । ଝଗେଶ୍ୱର ମହାପାତ୍ର ।

୬ । ବଂଶୀଧର ମହାନ୍ତି, ଓଡ଼ିଶାର ନାଥ ସଂପ୍ରଦାୟ ଓ ନାଥ ସାହିତ୍ୟ (Printed and published) କଟକ ୧୯୬[illegible] ।

ଏହିପରି କ୍ରମରେ ଗତିକରି ମୂଳାଧାରଠାରେ ମିଶିଅଛି । ଏହାକୁ ପିଙ୍ଗଳା କହନ୍ତି । ଏହାର ଅପର ନାମ ସୂର୍ଯ୍ୟ । ଆଜ୍ଞାଚକ୍ରଠାରେ ଉକ୍ତ ତିନି ନାଡ଼ି ମିଳିତ ହୋଇ ଗୋଟିଏ ଗଣ୍ଠି ହୋଇଛନ୍ତି । ସେଠାରୁ ଇଡ଼ା ନାଡ଼ିର ବାମ ପୁଡ଼ାକୁ ଓ ପିଙ୍ଗଳା ନାଡ଼ିର ଡାହାଣ ପୁଡ଼ାକୁ ଯାଇଛି । ବ୍ରହ୍ମଦ୍ୱାର ରୁଦ୍ଧ କରି ସୁପ୍ତ କୁଣ୍ଡଳିନୀ ଶକ୍ତିକୁ ଖେଚରୀ, ଭୂଚରୀ ଆଦି ମୁଦ୍ରା ଅଭ୍ୟାସ ଦ୍ୱାରା ଜାଗ୍ରତ କଲେ ପଦ୍ମ ସବୁ ବିକଶିତ ହୁଏ ଓ ଗ୍ରନ୍ଥିଭେଦ ହୁଏ ।

ଅଷ୍ଟମରୁ ଦ୍ୱାଦଶ ଶତକ ମଧ୍ୟରେ ଲିଖିତ ଆଶ୍ଚର୍ଯ୍ୟ ଚର୍ଯ୍ୟାଚର୍ଯ୍ୟ ଏବଂ ନାରାୟଣାନନ୍ଦ ଅବଧୂତ ସ୍ୱାମୀଙ୍କର ରୁଦ୍ର ସୁଧାନିଧିରେ ଏହି ପିଣ୍ଡ ବ୍ରହ୍ମାଣ୍ଡ ଓ ଷଟ୍‌ଚକ୍ର ନିରୂପଣ ତତ୍ତ୍ୱର କେବଳ ଦାର୍ଶନିକ ନୁହେଁ ସାହିତ୍ୟିକ ଉପସ୍ଥାପନା ମଧ୍ୟ ଦେଖିବାକୁ ମିଳେ । ପୁଣି ଶିଶୁବେଦରୁ ଆରମ୍ଭକରି ଷୋଡ଼ଶ ଶତାବ୍ଦୀ ଶେଷ ପର୍ଯ୍ୟନ୍ତ ଜଗନ୍ନାଥ ଧର୍ମୀ ବୈଷ୍ଣବ, ବୌଦ୍ଧ, ତାନ୍ତ୍ରିକ, ଯୋଗମାର୍ଗୀ ସମସ୍ତଙ୍କ ରଚନାରେ ଉଭୟ ସାଙ୍କେତିକ ଓ ଲୋକଗ୍ରାହ୍ୟ ଭାଷାରେ ଏ ସବୁର ସବିଶେଷ ଆଲୋଚନା ଥିଲାବେଳେ ବୀରଶୈବ ବଚନରେ ବିଶେଷ ନୂତନତା ଏମାନଙ୍କ ପକ୍ଷରେ ନଥିଲା । ଶ୍ରୀବତ୍ସ ନାଥ ତାଙ୍କ 'ନାଥଧର୍ମ' ପୁସ୍ତିକାରେ ଶିଶୁବେଦ ପୋଥିରେ ଯୋଡାଯାଇଥିବା ଯାଇ ଡୋମ୍ବୀଙ୍କର ଯେଉଁ କେତୋଟି ବଚନ ଦେଇଛନ୍ତି ତାହା ମହତ୍ତ୍ୱପୂର୍ଣ୍ଣ । ସାଧନା ଓ ସାହିତ୍ୟ ଉଭୟ ଦୃଷ୍ଟିରୁ ତାଙ୍କୁ ଆକ୍କା ମହାଦେବୀଙ୍କ ସହ ତୁଳନା କରାଯାଇପାରେ । ଦୁଃଖର କଥା ଯେ ତାଙ୍କ ରଚନା ଏଯାଏ ସୁଧୀ ମଣ୍ଡଳୀର ଦୃଷ୍ଟି ଆକର୍ଷଣ କରିନାହିଁ । ସମ୍ଭବତଃ ଅଧିକାଂଶ ଅଧୁନା ଲୁପ୍ତ । ସମାଜ ସଂସ୍କାର ଦୃଷ୍ଟିରୁ ମଧ୍ୟ ପୁରୁଷୋତ୍ତମ କ୍ଷେତ୍ରର ଉଦାର ପୃଷ୍ଠଭୂମିରେ ବୀରଶୈବ ଆନ୍ଦୋଳନ ମଳିନ ଦେଖାଯାଇଥିବ । ଏହି ପରିସ୍ଥିତିରେ ବୀର ଶୈବଧର୍ମ ପ୍ରତି ଓଡ଼ିଶାରେ ସେତିକି ଦୃଷ୍ଟି ଦେବା କଥା ତା' ଦିଆଯାଇ ନାହିଁ । ବୀର ଶୈବଧର୍ମ ସମ୍ବନ୍ଧରେ ଜାଣିବାକୁ ହେଲେ ଓଡ଼ିଆ ଶୈବ ପରମ୍ପରା ଆଲୋଚନା କରି ତୁଳନାତ୍ମକ ଭାବରେ ଉଭୟର ବିଚାର କରିବାକୁ ହେବ ।

ସାଧାରଣତଃ ଯେଉଁମାନେ ଭାରତୀୟ ଶୈବଧର୍ମର ବିଚାର କରିଥାନ୍ତି ସେମାନେ ଶୈବଧର୍ମକୁ ପ୍ରାକ୍‌ଆର୍ଯ୍ୟ ଓ ଆର୍ଯ୍ୟ ବିଶ୍ୱାସର ସମନ୍ୱୟ ରୂପେ ଗ୍ରହଣ କରିଥାନ୍ତି । କିନ୍ତୁ ସମନ୍ୱୟ ପୀଠ ଓଡ଼ିଶାରେ ଶୈବଧର୍ମର ଅନ୍ୟ ଏକ ସମନ୍ୱୟାତ୍ମକ ବୈଶିଷ୍ଟ୍ୟ ଦେଖିବାକୁ ମିଳେ । ଅଧିକାଂଶ ପଣ୍ଡିତ ଏପର୍ଯ୍ୟନ୍ତ ଏହି ଦିଗଟିକୁ ଉପେକ୍ଷା କରିଛନ୍ତି ।

ଗୋଟିଏ କଥାରେ ଓଡ଼ିଶା ଶୈବଧର୍ମକୁ 'ହରିହର ତତ୍ତ୍ୱ' ବୁଝାଯିବ । ପ୍ରଣବାନନ୍ଦ ଦାଶ (ହିଷ୍ଟ୍ରି ଅଫ୍ ଶୈବିଜିମ୍, ଦାସ୍ତ ଏଣ୍ଡ ଚୌଧୁରୀ, କଲିକତା

୧୯୭୪)ଙ୍କ ପରି ପଣ୍ଡିତମାନେ ଏହାକୁ **'Sub-sect'** କହିଛନ୍ତି । ଏହା ମୁଖ୍ୟତଃ ହରିହର ତତ୍ତ୍ୱର ପରମ୍ପରା ନ ବୁଝିବାର ଫଳ । କାଶ୍ମୀର, ଗୁଜରାଟ ବା କର୍ଣ୍ଣାଟକର ଶୈବ ଧାରାପରି ହରିହର ତତ୍ତ୍ୱ ଏକ ପ୍ରମୁଖ ଧାରା । ବିଷ୍ଣୁ ଧର୍ମ ଓ ଶିବ ପ୍ରଧାନ ଧର୍ମ ମଧ୍ୟରେ ଯେଉଁ ପାର୍ଥକ୍ୟ ମୂଳତଃ ହୁଏ ଅପର ଭାରତୀୟ ଓଡ଼ିଆ ପରମ୍ପରାରେ ସେହି ପାର୍ଥକ୍ୟ ଖୋଜିବାକୁ ପଡ଼ିବ ।

ଶୈବ କିଏ ? ଶିବ ବିଶ୍ୱାସୀ ଓ ଶିବେତର ଦେବତାଙ୍କ ଅବିଶ୍ୱାସୀ ବ୍ୟକ୍ତି ଶୈବ । ସେହିପରି ବିଷ୍ଣୁ ବିଶ୍ୱାସୀ ଓ ବିଷ୍ଣୁ-ଇତର ଅନ୍ୟ ଦେବତାଙ୍କ ଅବିଶ୍ୱାସୀ ବ୍ୟକ୍ତି ବୈଷ୍ଣବ, ଏହାହିଁ ଭାରତର ସାଧାରଣ ଧର୍ମ ବିଶ୍ୱାସ ଓ ପଣ୍ଡିତମାନେ ଏହି ମତକୁ ଗ୍ରହଣ କରି ନେଇଛନ୍ତି । ଏଥିପାଇଁ ଅନେକ ଶଙ୍କର ଙ୍କ ସମନ୍ୱୟ ବାଦକୁ ନ ବୁଝି ତାଙ୍କୁ ଶୈବ ଓ ଶଙ୍କର ସ୍ୱରୂପ ବୋଲି ଦାବୀ କରିଛନ୍ତି । ସେତେବେଳେ ଶଙ୍କରଙ୍କୁ ଶୈବ କହି ସଂକୀର୍ଣ୍ଣ ଧର୍ମର ଗଣ୍ଡିରେ ବାନ୍ଧିବାର ଚେଷ୍ଟା ହେଲା. ସେତେବେଳେ ଅପ୍ପୟ ଦୀକ୍ଷିତଙ୍କ ପରି ପଣ୍ଡିତଙ୍କୁ ଶଙ୍କରଙ୍କ ସମନ୍ୱୟବାଦ ବିଷୟରେ ବୁଝେଇବାକୁ ହୋଇଥିଲା । 'ହର୍ତ୍ତୁଂ ନାଂ ତାଡ୍ୟମାନେପି ନଗତେଷ୍ଟି ବିଷ୍ଣୁ ମନ୍ଦିର' ପରି ମତରେ ବିଶ୍ୱାସ କରୁଥିବା ଶୈବ ଓ 'ଜଗଦୀଶେ ବା ଜଗଦନ୍ତରାତ୍ମନ, ନ ଭେଦବାଦଃ ପ୍ରତିପତ୍ତିରସ୍ତି ମେ । ତଥାପି ଭକ୍ତି ସ୍ତରୁଣେନ୍ଦୁ ଶେଖରେ ।' ବିଶ୍ୱାସୀ ଶୈବଙ୍କ ମଧ୍ୟରେ ପାର୍ଥକ୍ୟ ଅଧିକ ବିସ୍ତାର କରି କହିବା ପ୍ରୟୋଜନ ନାହିଁ । ଓଡ଼ିଶା ଏହିପରି ଏକ ସମନ୍ୱୟ କ୍ଷେତ୍ର ଯେଉଁଠି ଶୈବ କହିଲେ ବିଷ୍ଣୁ ବିଦ୍ୱେଷୀ ନୁହେଁ ଶିବ ପ୍ରଧାନ ଉପାସନାକୁ ବୁଝାଉଥିଲା ।

ରୁଦ୍ରସୁଧାନିଧିର ଅଭିନବ ଚୈତନ୍ୟ ଶିବପୂଜକ । କିନ୍ତୁ ମେ ଯେଉଁ ସ୍ତ୍ରୀକୁ ବାହାହେଲ ସେ ହେଉଛି ଲକ୍ଷ୍ମୀକନ୍ୟା । କେଉଁକାଳୁ ଜଗନ୍ନାଥଙ୍କର ହରିହର ବେଶ ଆରମ୍ଭ ହେଲା କହିବା କଷ୍ଟ । ଠିକ ସେହିପରି କେବେଠୁ ଲିଙ୍ଗରାଜ ମନ୍ଦିରରେ ଶିବ ବିଷ୍ଣୁ ରୂପରେ ଦର୍ଶନ ଦେବା ଆରମ୍ଭ କଲେ କହିବା କଠିନ । ହରିହର କ୍ଷେତ୍ରରେ ହିଁ ଏହି ପରିଣାମ ସମ୍ଭବ । ଅନ୍ୟତ୍ର ନୁହେଁ ଆଜି ମଧ୍ୟ ଲିଙ୍ଗରାଜଙ୍କ ପାଖରେ ବେଲପତ୍ର ତୁଳସୀ ଲାଗି ହୁଏ ଓ ହରିହରାୟ ନମଃ, ମନ୍ତ୍ରରେ ତାଙ୍କର ପୂଜା ହୁଏ । ଭୁବନେଶ୍ୱର ମନ୍ଦିର ଚୂଡ଼ାରେ ବିଷ୍ଣୁଚକ୍ର ଓ ହରଧନୁର ଯେଉଁ ସମନ୍ୱିତ ରୂପ ଦେଖିବାକୁ ମିଳେ ତାହା ଓଡ଼ିଶା ପରମ୍ପରାର ସଙ୍କେତ ।

ଏହି ହରିହର ମତ ଓଡ଼ିଶା ପରମ୍ପରାରେ ବ୍ୟତିକ୍ରମ ନୁହେଁ । ବିଷ୍ଣୁ କ୍ଷେତ୍ର ( ଜଗନ୍ନାଥ ) ପାଖରେ ଶକ୍ତିପୀଠ ( ବିମଳା ), ବିଷ୍ଣୁ ମନ୍ଦିରରେ ଦଣ୍ଡୀପାଠ. ଶକ୍ତି ମନ୍ଦିରରେ ଗୀତଗୋବିନ୍ଦ ପାରାୟଣ, ଏହି ମହା ସମନ୍ୱୟ କ୍ଷେତ୍ରରେ ହିଁ ସମ୍ଭବ । ବୈଦିକ ଓ ପୌରାଣିକ ପୂଜାର ଯେଉଁ ସଂହିତା ଓଡ଼ିଶାରେ ଘଟିଛି, ଜଗନ୍ନାଥ ମନ୍ଦିରରେ ଏହା ସାଙ୍ଗକୁ ତାନ୍ତ୍ରିକ ଓ ଶାବର ପୂଜାର ସଂମିଶ୍ରଣ ପାଇଁ ମଧ୍ୟ ଚେଷ୍ଟା ହୋଇଛି । କଠୋର ଧର୍ମ ସୀମାରେ ବିଶ୍ୱାସୀ ବୈଷ୍ଣବ ଓ ଶୈବମାନେ ଏ

ପରମ୍ପରାକୁ ଉପେକ୍ଷା କରିବାରେ ଅଶ୍ଚର୍ଯ୍ୟ କିଛି ନାହିଁ । ଦୁଃଖର କଥା ଯେ ଓଡ଼ିଆ ସଂସ୍କୃତିର ଏହି ବଳିଷ୍ଠତାକୁ ଦୃଢ଼ ଭାବରେ ଉପସ୍ଥାପନ କରିବା ପାଇଁ ସ୍ଥାନୀୟ ପାଣ୍ଡିତ୍ୟ ଓ ବିଦ୍‌ବତ୍ତାର ଅଭାବ ।

ପୁରୀ ହିନ୍ଦୁମାନଙ୍କର ଚାରିଧାମ ମଧ୍ୟରେ ଏକ ମୁଖ୍ୟଧାମ । ଏଠି ଜାତି ଧର୍ମ ଭେଦ ନାହିଁ । ବ୍ରାହ୍ମଣ ଚଣ୍ଡାଳ ଭେଦ ନାହିଁ । ସବୁ ଧର୍ମର ଲୋକେ ଜଗନ୍ନାଥଙ୍କ ମୂର୍ତ୍ତିରେ ଆପଣା ଇଷ୍ଟ ଦେବଙ୍କୁ ଦେଖିଛନ୍ତି । ବୌଦ୍ଧ କବିମାନେ ଜଗନ୍ନାଥଙ୍କୁ 'ସର୍ବ ଜୀନବରାର୍ଚ୍ଚିତ','ସର୍ବ ବୁଦ୍ଧମୟ' କହିଥିଲା ବେଳେ ଶୈବମାନେ 'ଭୈରବ', ତାନ୍ତ୍ରିକମାନେ 'ଦକ୍ଷିଣ କାଳିକା' ରୂପେ ତାଙ୍କୁ ଦେଖିଛନ୍ତି । ଶ୍ରୀ ଚୈତନ୍ୟ ଜଗନ୍ନାଥଙ୍କ ଭିତରେ 'କାଳନ୍ଦୀତଟ ବିପିନ' ବିହାରୀ କୃଷ୍ଣଙ୍କୁ ଦେଖିଛନ୍ତି । ଶବର ଦେବତା ନୀଳମାଧବ ହିନ୍ଦୁ ଦେବତା ଜଗନ୍ନାଥ ହୋଇ ହିନ୍ଦୁ ଐକ୍ୟର ପ୍ରତୀକ ହେଲାପରି, ବହୁ ବିଭିନ୍ନ ଜାତିର ଭିନ୍ନ ଭିନ୍ନ ଇଷ୍ଟଦେବ ଇଷ୍ଟ ଲିଙ୍ଗରେ ପରିଣତ ହେବା କେବଳ ବଚନ ସାହିତ୍ୟକାର ଶରଣମାନଙ୍କ ଯୋଗୁ ସମ୍ଭବ ହୋଇଛି । ଧୋବା ମାଚୟ୍ୟା, ଜାଲେଣିକାଠ ଯୋଗୋଉଥିବା ମାରେୟ୍ୟା, ଭଣ୍ଡାରୀ ହମ୍ପାଣ୍ଣା, ମୋଚି ହାରଲୟ୍ୟା ଚମଡ଼ା ଦେଖାଉ କାକ୍‌କୟ୍ୟା, କନ୍ନାରୀ ବୋମ୍ମୟ୍ୟା, ସମସ୍ତେ ମିଶି ଯେଉଁ ଅପୂର୍ବ ବଚନ ସାହିତ୍ୟ ରଚନା କଲେ ତାହା ଦ୍ୱାରା ସ୍ୱର୍ଗକୁ ପାହାଚ ପଡ଼ିଲା ଓ ସାଧାରଣ ଲୋକଙ୍କୁ ଶୂନ୍ୟ ସିଂହାସନ ଦୃଶ୍ୟ ହେଲା । ଅଧ୍ୟାତ୍ମ ସାମ୍ୟବାଦ ଭିତରେ ସମାଜର ମଣିଷ ଗଢ଼ା ନାନା ଭେଦ ଧୋଇ ହୋଇଗଲା ।

ବଚନକାର ମାନେ ସମାଜ ବ୍ୟବସ୍ଥା ବିରୁଦ୍ଧରେ ବିପ୍ଳବର ନେତା ନୁହନ୍ତି । ଆପଣାର ସାଧନାରେ ସମସ୍ତଙ୍କର ସମାନ ଅଧିକାର । ଏଥିରେ ଉଚ୍ଚ ନୀଚ ଭେଦା ଭେଦ ନାହିଁ, ଏହାହିଁ ପ୍ରତିଷ୍ଠା କରିବା ସେମାନଙ୍କର ଲକ୍ଷ୍ୟ ଥିଲା । ଏହି ଅଧ୍ୟାତ୍ମ୍ୟ ସାମ୍ୟବାଦ ଫଳରେ ସମାଜର ଯେଉଁ ବନ୍ଧବାଡ଼ ଭାଙ୍ଗିଲା, ତା ଉପୁର ଲାଭ । ପ୍ରକୃତ ପକ୍ଷେ ସମାଜର ବନ୍ଧବାଡ଼ ଯେ ଭାଙ୍ଗିବ ଏ ବିଷୟରେ ସେମାନେ ନିଃସନ୍ଦେହ ଥିଲେ । କିନ୍ତୁ ଏଥିପାଇଁ ରାଜଶକ୍ତିର ସହାୟତା ପ୍ରୟୋଜନ । ଯେତେଦିନ ପର୍ଯ୍ୟନ୍ତ ରାଜା ଧର୍ମାନୁଗତ ସେତେଦିନ ପର୍ଯ୍ୟନ୍ତ ଧର୍ମର ବିକାଶ ଓ ବିସ୍ତାର । ଯେତେବେଳେ ରାଜା ବିଜ୍ଜଳ ଧର୍ମନେତା ବସବଙ୍କୁ ସନ୍ଦେହ କରିବା ଆରମ୍ଭ କଲେ, ସେତେବେଳେ ଧର୍ମଲୋପ ସ୍ୱାଭାବିକ । ବୀର ଶୈବ ଧର୍ମ ସୂର୍ଯ୍ୟ ଅସ୍ତ ହେବା ମୂଳରେ ଏହାହିଁ ପ୍ରଧାନ କାରଣ ।

କନ୍ନଡ଼ ସାହିତ୍ୟରେ ବଚନ ଗୁଡ଼ିକର ଏକ ବିଶେଷ ସ୍ଥାନ ରହିଛି । ଏହା ଯେ ସମସାମୟିକ ଓ ପରବର୍ତ୍ତୀ ସାହିତ୍ୟକୁ ନାନା ଭାବରେ ପ୍ରଭାବିତ କରିଛି, ନୁହେଁ । ଆଜିପର୍ଯ୍ୟନ୍ତ ମଧ୍ୟ ଏହି ପରମ୍ପରା ବଞ୍ଚିରହିଛି । ଅନେକ ଆଧୁନିକ ଲେଖକ ବଚନ ରଚନା କରୁଥିଲେ ମଧ୍ୟ ମାତ୍ର ଜଣେ ଦୁଇଜଣ ଉତ୍ତୋରର୍ଣ୍ଣ ହୋଇଛନ୍ତି ।

# ମୁଖ୍ୟ ବଚନକାର

* ମହାଦେବୀ ଅକ୍କା
* ଆଲ୍ଲମ ପ୍ରଭୁ
* ବସବାଣ୍ଣା

## ଆତ୍ମମ—

### ୧

ଦେହକୁ ବଗିଚ୍ଚ କର, ମନକୁ ଶାବଳ କର,
ମାୟାର ଚେର ଉପାଡ, ସଂସାର ମାଟିର ଢେଲାଭଙ୍ଗ
ମୁଁ ବ୍ରହ୍ମ ବୋଉଛୁ ।
ଅଖଣ୍ଡ ମଣ୍ଡଳାକାର କୂଅ, ପବନ ପାଣି ସନ୍ଧ କର
ମୁଁ ସୁଷୁମ୍ନା ନାଡ଼ିରେ ପାଣି ମଡ଼ାଉଛୁ ।
ପାଞ୍ଚ ବଳଦ ଦାଉରୁ ବଞ୍ଚେଇବାକୁ
ସମତା ଓ ଶରଣ୍ୟକୁ ବାଡ଼ କର
ଏ ତୋଟାରେ ସଦା ଉଜାଗର ରହ
ମୁଁ ଗଜା ବଞ୍ଚେଇ ରଖୁଛୁ ।
ଗୋହ୍ନେଶ୍ୱର ।

### ୨

ଯେମାନେ କହନ୍ତି ଧନମାୟା
ନାଁ, ସୁନା ମାୟା ନୁହେ ।
ସ୍ତ୍ରୀ ମାୟା ।
ନାଁ, ସ୍ତ୍ରୀ ମାୟା ନୁହେ ।
ଜମି ମାୟା
ନାଁ, ଜମି ମାୟା ନୁହେ ।
ମନ ସାମନାର କାମନା ମାୟା
ଦେଖ, ଗୋହ୍ନେଶ୍ୱର ।

୩

ଅଜ୍ଞାନ ଦୋଳାରେ ଜ୍ଞାନ ଶିଶୁ ଶୋଇଛି
ଦେବ, ଶାସ୍ତ୍ର ଦଉଡ଼ି ବାନ୍ଧି
ଭ୍ରାନ୍ତ ମା ନାନା ବାସ୍ନା ଗୀତ ଗାଉଛି ।
ଦୋଳ ଭାଙ୍ଗିବ, ।
ଦଉଡ଼ି ଛିଣ୍ଡିବ ।
ନାନା ବାସ୍ନା ଗୀତ ବନ୍ଦ ହେବ
ସେ ପର୍ଯ୍ୟନ୍ତ ଗୋହ୍ନେଶ୍ବରଙ୍କୁ କେହି ଦେଖି ପାରିବେ ନାହିଁ ।

୪

ଜାଣି ଜାଣି କର ଜ୍ଞାନ ବାଂଛ ।
ଭୁଲ ଭୁଲ କର ଭୁଲିବା ବାଂଛ ।
ଗୋହ୍ନେଶ୍ବର ଶବ୍ଦ ସମ୍ପୂର୍ଣ୍ଣ ବାଂଛ ।

୫

ସୁନା ଘଷିଲେ
କ'ଣ ତାର ବର୍ଣ୍ଣ ଘଷିହେବ ?
ଫୁଲ ଲଗେଇଲେ
କ'ଣ ତାର ସୁଗନ୍ଧ ଲଗେଇ ହେବ ?
କର୍ମ କଲେ
କ'ଣ ବସ୍ତୁଜ୍ଞାନ ହେବ ?
ସିଦ୍ଧରାମ,
ଗୋହ୍ନେଶ୍ବର ନାମ ଉଚ୍ଚାରଣ କଲେ
କ'ଣ ଅଙ୍ଗ ଲିଙ୍ଗମୟ ହେବ ?

## ୨

ଶବ ? କାହାର ଅଇଁଠା ।
ସ୍ୱର୍ଗ ? ଚମତ ଅଇଁଠା ।
ବ୍ରହ୍ମ ? ଋଷିର ଅଇଁଠା ।
ଶ୍ରୁତି ? ଜିଭର ଅଇଁଠା ।
ପରିମଳ ? ନାକର ଅଇଁଠା ।
ମୁଁ କାର ? ଜ୍ଞାନର ଅଇଁଠା ।
ସବୁ ଦ୍ୱୈତ ଅଇଁଠା
ଆଲୋକର ଆଲୋକ ଗୋପେଶ୍ୱର ଲିଙ୍ଗ ନଷ୍ଟ କରିଛୁ ।

## ୨

ଶବର ସ୍ପନ୍ଦନ ?
ନିଜ ମନର ସନ୍ଦେହ ଛଡ଼ା
ଶବ କେବେ ମାଗି ହୁଏ ?
ପବନରେ କେବେ ଧୂଳି ଲାଗେ ?
ହେ ସଙ୍ଗନ ବସବ
ଗୋପେଶ୍ୱର ଲିଙ୍ଗର ଏ ଭାବନା ନାହିଁ ।

୮

ସଂସାର ଶବରେ କୁକୁରର ଧାଡ଼ ।
ମାଂସ ପାଇଁ ଦେଖ ବୋବାଲି ପାଡ଼ ।
କୁକୁରର କଳିରେ ଜାଗନ୍ତ ଶବଟ ଅନ୍ଧଦାସ
ଗୋହ୍ନେଶ୍ବର ଲିଙ୍ଗର ସେଠାରେ ନାହିଁ ବାସ ।

୯

ପ୍ରାଣ ଲିଙ୍ଗର କାୟା ଶେଯ ।
ଆକାଶ ଗଂଗାରେ ମାଜଣା ।
ଫୁଲ ନ ଥିବା ସୁଗନ୍ଧରେ ପୂଜା ।
ହୃଦୟ କମଳରେ ଶିବ ଶିବ ଶବ୍ଦ ।
ଗୋହ୍ନେଶ୍ବର, ଏହାହିଁ ଅଦ୍ବୈତ ।

୧୦

ମୁଁ ଠାକୁର ନାଁ ତୁମେ ଠାକୁର ?
ତୁମେ ସବୁ ଠାକୁର
ମତେ କାହିଁକି ଦେଖା ଶୁଣା କରୁଛ ?
ତୁମ ପାଇଁ ମୁଁ ଦେଉଛୁ ଅଞ୍ଜୁଳେ ପାଣି
ଭେକ ହେଲେ ଶୁଣାଏ ଭକ୍ତ ।
ଗୋହ୍ନେଶ୍ବର, ଦେଖ ମୁଁ ଠାକୁର ।

## ୧୧

କର୍ପୂର ପାହାଡ଼ରେ ନିଆଁ ଲାଗିଲେ
କୋଇଲା ଆସିବ କାହୁଁ ?
ବରଫ ତିଆରି ଶିବ ଲିଙ୍ଗରେ
ଝରିବ କଳଶ କାହୁଁ ?
ନିଆଁ ପାହାଡ଼କୁ ଲକ୍ଷ ଶର ମାର
ଖୋଜିଲେ ମିଳିବ କାହୁଁ ?
ଗୋହ୍ନେଶ୍ୱର ଲିଙ୍ଗ ଅନୁଭବ ପରେ
ସ୍ମରଣ ଆସିବ କାହୁଁ ?

## ୧୨

ଅଗ୍ନି ବୃଷ୍ଟିରେ ଜଳ ହୁଏ ।
ଜଳ ପ୍ରଳୟରେ ବାୟୁ ହୁଏ ।
ମହା ପ୍ରଳୟରେ ଆକାଶ ହୁଏ ।
ଜଗତ ପ୍ରଳୟରେ
ଆପଣାକୁ ବିସର୍ଜନ କର
ଗୋହ୍ନେଶ୍ୱର ଲିଙ୍ଗ ହୁଏ ।

## ୧୩

ବାୟୁ ବଢେଇଲେ ଆକାଶ ନାନାବାଦ୍ୟ ଗୀତ ଗାଇଲା ।
ଶୂନ୍ୟତା କ୍ଲାନ୍ତ ହେଲେ ନିକାଞ୍ଚନତା ଦୁଧ ଖୁଆଇଲା ।
ଆକାଶ ଢଳେଇଲା ।
ନାନା ବାଦ୍ୟ ଗୀତ ବନ୍ଦ ହେଲା ।
ଗୋହେଶ୍ୱର ନଥିଲ ମଣ ରଥିଲେ ।

## ୧୪

ତୁମ ତେଜ ଦେଖିବାକୁ ଆସି
ମୁଁ ଶତକୋଟି ସୂର୍ଯ୍ୟ ଉଦୟ ଦେଖିଲି ।
ବିଜୁଳି ଲତାର ଦଳ ଦେଖି
ମୁଁ ଅବାକ୍ ହେଲି ।
ଗୋହେଶ୍ୱର,
ତୁମେ ଜ୍ୟୋତିର୍ଲିଙ୍ଗ ହେଲେ
ତା'ର ଦୃଷ୍ଟାନ୍ତର ନାହିଁ ।

## ୧୫

ମହିଳ ଧାପ ପଣ ଏହାର ବାହାର ନାହିଁ, ଭିତର ନାହିଁ ।
ଏହା'ର ଅଦ୍ଭୁତ ପଣରେ ମୁଁ ଚକିତ ।
ନୁହଁଲେ ଏହା ଦେଖିହୁଏ,
ଛୁଇଁଲେ ଏହା ଉଭେଇ ଯାଏ ।
ନା ଆଡକୁ ଗଲେ ପାଖ,
ମାଙ୍କୁ ଗଲେ ଦୂର ।
ରୂପ ଅରୂପକୁ ଗିଳିଛି ।
ଶୂନ୍ୟ ସମାଧିରେ ବସିଛି ।
ଏ ଦୃଷ୍ଟାନ୍ତ ଅମୃତ ପସରା,
ତା ଅଦ୍ଭୁତ ଏକ ହେଲେ କ'ଣ ହେବ ଧନ୍ୟ ।

୧୬

ପାଣିଅଣି ମାଜଣା ଭୁଲିଲି;
ଫୁଲ ଅଣି ପୂଜନ ଭୁଲିଲି ।
ଭୋଗ ଅଣି ଅର୍ପଣ ଭୁଲିଲି,
ଲିଙ୍ଗ ଦେଖି ଆପେ ଭୁଲିଗଲି ।
ମହାଘନ ନଜରେ ନିଜେ ଲୀନ ହେଲି ।
ହେ ଗୋହେଶ୍ୱର ।

୧୭

ଆମ୍ବ ଗଛ କୋଇଲି
କେଉଁଠି କେବେ କୁଟୁମ୍ବ ଥିଲେ ?
ପାହାଡ଼ ଅଁଳା, ସମୁଦ୍ର ଲୁଣ
କେଉଁଠି କେବେ କୁଟୁମ୍ବ ଥିଲେ ?
ମୁଁ ଆଉ ଗୋହେଶ୍ୱର
କେଉଁଠି କେବେ କୁଟୁମ୍ବିତା ?

୧୮

ଚଳୁଥିବା ପାଣିର ଦେହସାରା ପାଦ
ଜଳୁଥିବା ନିଆଁର ଦେହସାରା ପାଟି
ବୋହୁଥିବା ପବନର ଦେହସାରା ହାତ
ତେଣୁ, ହେ ଗୋହେଶ୍ୱର ଦେବ,
ତୁମ ଭକ୍ତର ଶ୍ରୀଅଙ୍ଗ ଲିଙ୍ଗମୟ ।

## ୧୯

ପଥରରେ ନିଆଁ ପରି
ପାଣିରେ ସ୍ୱାଦ ପରି
ବୀଜରେ ବୃକ୍ଷପରି
ଶବ୍ଦରେ ନିଃଶବ୍ଦ ପରି
ଗୋହ୍ଲେଶ୍ୱର,
ଶରଣ ଓ ତୁମ ଭିତରେ ଲୁଚ୍ଛିତା ।

## ୨୦

ଅନ୍ନଦାନ ଦେଇ, ସତ କହି ଜଳଛତ୍ର ବସେଇ
ପୋଖରୀ ଖୋଳି ମରଣ ପରେ ସ୍ୱର୍ଗପ୍ରାପ୍ତି ।
ଶିବ ସ୍ୱରୂପ ଜନୁ ପ୍ରାପ୍ତି ନାହିଁ,
ଶିବ ଅନୁଭବୀ ଶରଣଙ୍କର ଫଳଲାଭ ନାହିଁ ।

## ୨୧

ଜଣେ ଜୀବନ୍ତ ଛବି ଆଙ୍କିପାରେ
ସେ ଜୀବନ ଆଙ୍କି ପାରିବ କି ?
ଜଣେ ଶାସ୍ତ୍ରାନୁସାରେ କାର୍ଯ୍ୟ କରିପାରେ
ସେ ଭକ୍ତ ସୃଷ୍ଟି କରିପାରିବ କି ?
ଗୋହ୍ଲେଶ୍ୱର,
ତୁମେ ପ୍ରାଣବନ୍ତ ଭକ୍ତରେ ତନ୍ମୟ ।
ଭକ୍ତ ଯେଉଁଠି ତୁମେ ସେଇଠି ।
ଭକ୍ତ ନଥିଲେ ତୁମେ ନାହିଁ ।

## ୨୨

ଯେଉଁମାନେ ଦୃଷ୍ଟି ବନ୍ଧନ କାଟିଛନ୍ତି,
ହୃଦୟ କୋଣୀ ଭାଜିଛନ୍ତି,
ଶବର ଆରମ୍ଭ ଜାଣିଛନ୍ତି,
ସେମାନଙ୍କୁ ମତେ ଥରେ ଦେଖା,
ଗୋହ୍ନେଶ୍ୱର ।

## ୨୩

ଆଶା ପାଇଁ ମଲେ କୋଟି କୋଟି
କୋଟି କୋଟି ମଲେ ସୁଖପାଇଁ ।
ସୁନା ପାଇଁ ମଲେ କୋଟି କୋଟି
ସ୍ୱର୍ଗ ସୁଖ ପାଇଁ ଭୂମି ପାଇଁ ।
ଗୋହ୍ନେଶ୍ୱର,
ଜଣେ କେହୁ ହେଲେ ତୁମ ପାଇଁ
ମରିବାର ଦେଖିଲିତ ନାହିଁ ।

## ୨୪

ପାହାଡ଼ ଯଦି ଶୀତରେ ଥରେ
କଅଣ ଘୋଡ଼େଇବ ?
ଶୂନ୍ୟତା ଯଦି ଲଙ୍ଗଳା ହୁଏ
କଅଣ ପିନ୍ଧେଇବ ?
ଭକ୍ତ ଯଦି ଉଗ୍ର ହୁଏ
ହେ ଗୋହ୍ନେଶ୍ୱର,
କି ଉପମା ଦେଲେ ଏହାବୁଝେଇବ ?

୨୫

ମିଳିଥିବା ଘୋଡ଼ାରେ ଚଢ଼ି ନଜାଣି
ଯେଉଁମାନେ ଆଉ ଏକ ଘୋଡ଼ା ମାଗନ୍ତି
ସେମାନେ ଖୀର ନୁହନ୍ତି କି ଧୀର ନୁହନ୍ତି ।
ତିନି ଭୁବନ ଜଞ୍ଜାଳ ବୋଝ ବୋହି
ଏହି କାରଣରୁ ଭ୍ରମୁଛନ୍ତି ।
ହେ ଗୋହେଶ୍ୱର,
ସେମାନେ ତୁମକୁ କପଟ ଜାଣିବେ ?

୨୬

ପଥର ଘର କରି
ପଥର ଲିଙ୍ଗ ଥାପି
ପଥରରେ ପଥର ରଖିଲେ
ଦେବତା କେଉଁଠି ?
ଗୋହେଶ୍ୱର,
ଯେଉଁମାନେ ଲିଙ୍ଗ ପ୍ରତିଷ୍ଠା କରନ୍ତି
ସେମାନଙ୍କର ଅତଳ ନରକ ଗତି ନିଶ୍ଚିତ ।

୨୭

ଖୋଲିଥିବା ପୋଟଳି, ତୋଳିଥିବା ଦେଉଳ
ଲୁଣ୍ଡି ଆସିଥିବା ପାଦ ଚିହ୍ନ ।
କର୍ମକାଣ୍ଡ ଓ ଯୋଗାଙ୍ଗ କ୍ରିୟା
ଜନ୍ମ ମରଣର ଆଲିଙ୍ଗନ ।
ଅତୀତ ବର୍ତ୍ତମାନ ଶିଙ୍କୁଳି ଛିଣ୍ଡେଇ
ଗୋହେଶ୍ୱର ଲିଙ୍ଗରେ ବାସକର
ହେ ସିଦ୍ଧରାମ ।

# ମହାଦେବୀ ଅକ୍କା—

୧

ଭୋକ ଲାଗିଲେ ଭିକ୍ଷାନ୍ନ ଅଛି
ଶୋଷ ଲାଗିଲେ ପୋଖରୀ, କୂଅ, ନଈ ଅଛି ।
ନିଦ ଲାଗିଲେ ଭଙ୍ଗା ଦେଉଳ ଅଛି
ଆତ୍ମା ସଙ୍ଗ ପାଇଁ
ଚନ୍ନ ମଲ୍ଲିକାର୍ଜୁନ,
ତୁମେ ଅଛ ।

୨

ଅଷ୍ଟବିଧ ଅର୍ଚ୍ଚନାରେ କପରି ତୋଷିବି
(ତୁମେ) ସକଳ ବହିରଙ୍ଗରୁ ଦୂରେ ।
ଅନ୍ତରଙ୍ଗ ଧ୍ୟାନରେ କପରି ତୋଷିବି
ତୁମେ ମନ ବଚନର ପାରେ ।
ଜପ ବା ପ୍ରାର୍ଥନାରେ କପରି ତୋଷିବି
(ତୁମେ) ସକଳ ଶବଦରୁ ଦୂରେ ।
ଜ୍ଞାନ ମାର୍ଗରେ ଭ୍ରମି କପରି ତୋଷିବି
ତୁମେ ମତିଗତିରୁ ଦୂରେ ।
ହୃଦୟ କମଳରେ କପରି ରଖିବି
ସର୍ବାଙ୍ଗ ପୂରି ରହିଛ ତୁମେ ।
ତୁମକୁ ପ୍ରୀତି କରିବା ମୋ ସାଧ୍ୟ ଅତୀତ
ଚନ୍ନ ମଲ୍ଲିକାର୍ଜୁନ,
ସ୍ୱେଚ୍ଛାରେ ପ୍ରୀତି କରିଛ ତୁମେ ।

୩

ମାୟା ଛାୟା ହୋଇ ଅଙ୍ଗକୁ ଘାରୁଛି,
ମାୟା ମନ ହୋଇ ପ୍ରାଣକୁ ଘାରୁଛି,
ମାୟା ମୂଢ ହୋଇ ମନକୁ ଘାରୁଛି,
ମାୟା ଜ୍ଞାନ ହୋଇ ମୂଢକୁ ଘାରୁଛି.
ମାୟା ବୁଦ୍‌ବୁଦ ଉଠାଇ ଜଗତ ଘାରୁଛି,
ହେ ଚନ୍ଦ୍ର ମଲ୍ଲିକାର୍ଜୁନ,
ତୁମ ସୃଷ୍ଟି ମାୟାକୁ କିଏ ପାରୁଛି ?

୪

ମାୟା ଶୃଙ୍ଖଳ ବନ୍ଧନେ
ମତେ ମାୟା ଛାଡ଼େନା ।
ମାୟା ନଛାଡ଼ିଲେ
ସିଦ୍ଧ ଧରିଥାଏ ।
ମାୟା ଯୋଗିର ଯୋଗିନୀ,
ଶ୍ରମଣର ଶ୍ରମଣୀ
ଯତିର ପ୍ରଶଂସା ।
ହେ ଚନ୍ଦ୍ର ମଲ୍ଲିକାର୍ଜୁନ,
ତୁମ ଗୁଣ ।
ମୁଁ ତୁମ ମାୟାକୁ ଡରେନା ।



ବେଦ, ଶାସ୍ତ୍ର, ପୁରାଣ, ଆଗମ
ସମାରୁ ଛରକ ପଢ଼ୁଥିବା ଚୋପୁ ସମାନ । ଦେଖ ।
ତାକୁ କୁଟି ଲାଭ କଅଣ ?
ଏଣେ ତେଣେ ଭ୍ରମୁଥିବା ମନର
ମୁଣ୍ଡ କାଟିଦେଲେ
ପରମ ଶୂନ୍ୟତା ।
ହେ ଚନ୍ନ ମଲ୍ଲିକାର୍ଜୁନ ।



ସଂସାରର ନିସ୍ଥା ପାଇଁ ରବି ସାକ୍ଷ,
ଇନ୍ଦ୍ରିୟର ନିସ୍ଥା ପାଇଁ ମନ ସାକ୍ଷ ।
ମୋର ଗୋଟିଏ ମନ
ସେ ମନ ତୁମଠି ଲୀନ ।
ହେ ଚନ୍ନ ମଲ୍ଲିକାର୍ଜୁନ,
ମୋର ପୁନର୍ଜନ୍ମ କାହିଁ ?

୭

ସାପର ବିଷଦାନ୍ତ ଭାଙ୍ଗି ଖେଳପାରିଲେ
ସାପ ପରମ ସାଙ୍ଗ ।
ବିକାର ବନ୍ଦ କରି କାୟାରେ ରହି ଜାଣିଲେ
କାୟାର ଉତ୍ତମ ସାଙ୍ଗ ।
ଦେହର ବିକାର ବୋଉ ରାକ୍ଷସୀ ହେବା ସାଙ୍ଗେ ସମାନ ।
ହେ ଚନ୍ନ ମଲ୍ଲିକାର୍ଜୁନ,
ଯେଉଁମାନେ ତୁମ ପ୍ରେମ ପାଇଛନ୍ତି
ସେମାନଙ୍କୁ ଦେହଗୁଣ ନାହିଁ ।

୮

ଗଙ୍ଗା ସାଙ୍ଗରେ ଯେଉଁ ପାହାଡ଼ ପର୍ବତ ଖେଳ ଖେଳୁଥିଲେ ।
ତାଙ୍କ ଦୁର୍ଦ୍ଦଶା ଦେଖ ।
ନିଆଁ ସାଙ୍ଗରେ ଯେଉଁ ଗଛବୃକ୍ଷ ଖେଳ ଖେଳୁଥିଲେ
ତାଙ୍କ ଦୁର୍ଦ୍ଦଶା ଦେଖ ।
ଆଲୁଅ ସାଙ୍ଗରେ ଯେଉଁ ଅନ୍ଧାର ଖେଳ ଖେଳୁଥିଲେ
ତାଙ୍କ ଦୁର୍ଦ୍ଦଶା ଦେଖ ।
ଜ୍ଞାନୀ ସାଙ୍ଗରେ ଯେଉଁ ଅଜ୍ଞାନ ଖେଳ ଖେଳୁଥିଲେ
ତାଙ୍କ ଦୁର୍ଦ୍ଦଶା ଦେଖ ।
ଏହିପରି ହେ ପରଶିବ, ହର, ଚନ୍ନ ମଲ୍ଲିକାର୍ଜୁନ,
ତୁମ ଜଙ୍ଗମଙ୍କ ସହିତ ମୋର ଯେଉଁ ଅଗଣିତ ଜନ୍ମ
ଖେଳ ଖେଳୁଥିଲେ,
ତାଙ୍କ ଦୁର୍ଦ୍ଦଶା ଦେଖ ।

## ୯

ଜହ୍ନ ଆକାଶର ଗମ୍ଭୀରତା ଜାଣେ ।
ଉଡ଼ନ୍ତା ଭୁଇଁ ଶାଗୁଣା ଜାଣିବ କାହୁଁ ?
ପଦ୍ମ ପାଣିର ଗମ୍ଭୀରତା ଜାଣେ ।
ନଈ ବନ୍ଧର ଅନାବନା ଫୁଲ ଜାଣିବ କାହୁଁ ?
ମହୁମାଛି ଫୁଲର ସୁଗନ୍ଧ ଜାଣେ,
ପାଖରେ ଉଡ଼ିବୁଲୁଥିବା ପୋତକ ଜାଣିବ କାହୁଁ ?
ହେ ଚନ୍ନ ମଲ୍ଲିକାର୍ଜ୍ଜୁନ,
ତୁମେ ତୁମ ଭକ୍ତର ମହିମା ଜାଣ ।
ମଇଁଷି ଦେହରେ ବସିଥିବା ମଶାପଲ ଏମାନେ
ଜାଣିବେ କାହୁଁ ?

## ୧୦

କୋଷାପୋକ ଆପଣା ସ୍ନେହର ତରଳତାରେ
ଆପଣା ଘରବୁଣି
ତନ୍ତୁରେ ବାନ୍ଧ ହୋଇ ମରେ ।
ମନର କାମନାରେ ବାନ୍ଧ ହୋଇ
ମୁଁ ଜଳୁଚି ।
ହେ ପ୍ରଭୁ,
ମୋ ମନର ଦୁରାଶା ଦୂରକର
ତୁମ ଆଡ଼କୁ ବାଟ ଦେଖାଅ
ହେ ଚନ୍ନ ମଲ୍ଲିକାର୍ଜ୍ଜୁନ ।

## ୧୧

ଗନ୍ଧରେ ଗନ୍ଧ ପଶି ହୋଇ
ତହିଁରୁ ନଆଁ ଉପୁଜଇ ।
ଘୃଣପାଖର ଗନ୍ଧବୃକ୍ଷ
ପୋଡଣ ହୁଅଇ ପାଉଁଶ ।

ଆତ୍ମାରେ ଆତ୍ମା ପଶି ହୋଇ
ତହିଁରୁ ତେଜ ଉପୁଜଇ ।
ଘୃଣ ପାଟର ସେତେ ଦେଖ
ଦେହତ୍ୱ ତାଙ୍କ ପୋଡ଼ଯାଇ ।

ହେ ଚନ୍ନ ମଲ୍ଲିକା ଅର୍ଜୁନ
ପ୍ରାର୍ଥନା କରେ ଏ କ ଜଣ ।
ସାଧୁ ସନ୍ଥଙ୍କ ଅନୁଭବ ।
ଦେଖାଇ ପାରେ ଦଥ ଠାବ ।

## ୧୨

ଉଜ୍ଜ୍ୱଳ ରକ୍ତଜଟା ମଣିମୁକୁଟ,
ସୁନ୍ଦର ପଣସ୍ଥାର ଦାନ୍ତ,
ହସିଲା ମୁହଁରେ
ଚଉଦ ଭୁବନକୁ ଉଜ୍ଜ୍ୱଳ କରୁଥିବା ଦୀପ୍ତିମନ୍ତ ଆଖି,
ମୁଁ ସେଇ ଦିବ୍ୟ ସ୍ୱରୂପ ଦେଖିଲି ।
ଦେଖି
ମୋ ଆଖିର ଦୁର୍ଭିକ୍ଷ ଚିରଦିନ ପାଇଁ ଚୁଲିଗଲା ।

ମୁଁ ଏପରି ଏକ ବଡ଼ ଲୋକ ଦେଖିଲି
ଯାହା ପାଖରେ ସବୁ ମରଦ ମାଛିପି ।

ଜଗତ ଆଦିଶକ୍ତି ସହ ଏକ ହୋଇ ଖେଳୁଥିବା
ପରମଗୁରୁ ଚନ୍ଦ୍ର ମଲ୍ଲିକାର୍ଜୁନଙ୍କ ପୌରୁଷ ଦେଖି
ମୁଁ ରକ୍ଷା ପାଇଲି ।

## ୧୩

ବାଳ ପଡ଼ି ଯାଉଛି
ମୁହଁ ଶେଥା ହୋଇଛି
ଦେହ ଲେଗ୍ନ ହୋଇଛି
ଭାଇମାନେ, ମୋ ସାଙ୍ଗରେ କାହିଁକି କଥା କହୁଛ ?
ଅଙ୍ଗ ଶିଥିଳ ହୋଇଛି
ସଂସାର ନଷ୍ଟ ହୋଇଛି
ମନର ବଳ ଯାଉଛି
ଭକ୍ତ ହୋଇଛି
ବାପାମାନେ, ମତେ କାହିଁକି କଷ୍ଟ ଦେଉଛ ?
ଚନ୍ନ ମଲ୍ଲିକାର୍ଜୁନ ସାଙ୍ଗରେ ଘରକରି
ମୁଁ ଆପଣା ଜାତ ହରେଇଛି ।

## ୧୪

ହାତ ପାହାନ୍ତାର ଧନ ବାଜେୟାପ୍ତ ହେଲେ
ଅଙ୍ଗକାନ୍ତି ଧନ କିଏ ନେବ ?
ବସ୍ତ୍ର ଅଳଙ୍କାର ସବୁ ବାଜେୟାପ୍ତ ହେଲେ
ସର୍ବବ୍ୟାପି ନିର୍ବାଣ କି ଯିବ ?
ବସ୍ତ୍ର ଅଳଙ୍କାରେ ମୂର୍ଖ କିବା ପ୍ରୟୋଜନ :
ଚନ୍ନ ମଲ୍ଲିକାର୍ଜୁନର ଉଜ୍ଜ୍ୱଳା କାରଣେ
ଘୋଡେଇ ଯେ ଢାଙ୍କିଛି ଲାଜ ଓ ସରମ ।

## ୧୫

ଘ୍ରାହ୍ୟ ସ୍ଥାନରୁ ଲୁଣା ଙ୍ପିଗଲେ
ପୁରୁଷ ସ୍ତ୍ରୀ ଉଭୟଙ୍କ ଲଜ ।
ପ୍ରାଣବନ୍ଧୁ,
ତୁମେ ସାରା ଜଗତ ବ୍ୟାପିଛ ।
ଲଜ ପାଇଁ ସ୍ଥାନ କାହିଁ ? କହ ।
ଚନ୍ନ ମଲ୍ଲିକାର୍ଜୁନ,
ସମସ୍ତ ଜଗତ ଆଖି ହୋଇ ଦେଖୁଛ ।
କପର କେଉଁ କପଟ ଲୁଚବ ? କହ ।

## ୧୬

ତୁମ ଜ୍ଞାନ ଧନ୍ୟ ନରକ ମୋକ୍ଷ
ତୁମ ଜ୍ଞାନ ବନା ମୋକ୍ଷ ନରକ ।
ଅଲେଡ଼ା ଦ୍ରାଣରେ ଆନନ୍ଦ ଦୁଃଖ
ତୁମ ପ୍ରେମଧନ୍ୟ ଯନ୍ତ୍ରଣା ସୁଖ ।
ହେ ଚନ୍ନ ମଲ୍ଲିକାର୍ଜୁନ,
ସ୍ନେହପାଶେ ମୋର ଭିଥାଇଛ ତୁମେ ଯେଉଁ ବନ୍ଧନ,
ମୋ ପାଇଁରେ ତାହା ଅଟଇ ହେ ପ୍ରିୟ ନିର୍ବନ୍ଧନ ।

## ୧୭

ବରଷିଲା ନିଆଁ ଝୁଲେ ମୋ ସ୍ନେହ ଶୋଷ ମରେ
ଅଜାତ ପଡ଼ିଲେ ଆକାଶ ମୁଣ୍ଡେ ମାଜଣା କରେ
ପାହାଡ଼ ପର୍ବତ ପଡ଼ିଲେ ସ୍ୱର୍ଗ କୁସୁମ ବୃଷ୍ଟି
ହେ ଚନ୍ନ ମଲ୍ଲିକାର୍ଜୁନ,
ତୁମଠି ପ୍ରାଣ ସମର୍ପଣ
ଯେବେ ଏ ମଥା ପଡ଼ିବ ଲୋଟି ।

## ୧୮

ବାଂଝ ପ୍ରସବ ବେଦନା ଜାଣେନା ।
ମାବତ ମା ପିଲା ସ୍ନେହ ଜାଣେ କି ?
ଜଖମ ନୋହିବା ଲୋକ କଷ୍ଟ ଜାଣିବ କେମିତ ?
ଚନ୍ନ ମଲ୍ଲିକାର୍ଜୁନ,
ତୁମ ପ୍ରୀତ ଖଣ୍ଡା ସ୍ୱର୍ଗ
ମୋ ଦେହରେ ଲାଗି ଯାଇଛି ।
ମୁଁ କଷ୍ଟରେ ଯଡ଼ୁଛି ।
ମା ମାନେ,
ତମେ ମନେ କପଶ ଜାଣିବ ?

## ୧୯

ଚିନ୍ତା ପୀଡ଼ିତ ମନ ଓଲଟି ପଡ଼ୁଛି ।
ବୋହୁଥିବା ଶୀତଳ ପବନରେ ନିଆଁ ଲାଗିଛି ।
ଜହ୍ନ ଆଲୁଅରେ ସୂର୍ଯ୍ୟ କିରଣର ଗନ୍ଧ,
ସମ୍ବରର ଖଜଣା ଆଦାୟକାରୀ ପରି ମୁଁ ଧାଉଁଛି ।

ଟିଅପାଙ୍ଗ,
ତାଙ୍କୁ ଗାଳିଦେଇ କହ ।
କହ ତାଙ୍କୁ ଏଠିକି ଆଣ ।
ଚନ୍ନ ମଲ୍ଲିକାର୍ଜୁନ ପାଳିଜର ଘଡ଼ି କ୍ଷଣ କୋପୀ ।

## ୨୦

ବୋଉ,
ଧୂଆଁ ନଥିବା ନିଆଁରେ ମୁଁ ପୋଡ଼ିଲି ।
ମୁହଁ ନଥିବା ଘା'ରେ ମୁଁ ଭୋଗିଲି ।
ସୁଖ ଶବ୍ଦ ନଥାଇ ମୁଁ କଷ୍ଟ ପାଇଲି ।
ଚନ୍ନ ମଲ୍ଲିକାର୍ଜୁନଙ୍କୁ ପ୍ରେମକରି
ମୁଁ ଅକାରଣ ଅସଂଖ୍ୟ ଜନ୍ମ ଲଭିଲି ।

## ୨୧

ବୋଉ,

ପର ପୁରୁଷ ପଦ ତଳର କଣ୍ଟା ।
ମୁଁ ସେମାନଙ୍କୁ ଛୁଇଁ ପାରିବିନି ।
ସେମାନଙ୍କ ପାଖକୁ ଯାଇ ପାରିବିନି ।
ସେମାନଙ୍କୁ ବିଶ୍ୱାସ କରି ପାରିବିନି ।
ବିଶ୍ୱାସ ଜନ୍ମୁ ପାରିବିନି ।

ବୋଉ,

ସେମାନଙ୍କ ଗୁଡରେ କଣ୍ଟା ।
ଚନ୍ନ ମଲ୍ଲିକାର୍ଜ୍ଜୁନ ଛଡ଼ା
ଅନ୍ୟ କୌଣସି ପୁରୁଷକୁ
ମୁଁ ଆଲିଙ୍ଗନ କରିପାରିବିନି ।

## ୨୨

ଶୁଣଲେ ଭଉଣି,
ମୁଁ ସପନ ଦେଖିଲି ।
ଚାଉଳ, ଗୁଆ, ନଡ଼ିଆ ।
ଦେଖିଲି ଜଣେ ସାଧୁ,
ଜୁଲୁଫି ବାଲ ଉଜ୍ଜ୍ୱଳ ଦାନ୍ତ ।
ଭିକ୍ଷା ପାଇଁ ଆସୁଛନ୍ତି ।
ତାଙ୍କୁ ଅନୁସରଣ କଲି !
ସେ ସତେ ଯେପରି ଧରି ବାନ୍ଧାରେ ।
ତାଙ୍କ ହାତରେ ହାତ ରଖିଲି ।
ଚନ୍ନ ମଲ୍ଲିକାର୍ଜ୍ଜୁନଙ୍କୁ ଦେଖି
ମୁଁ ଆଖି ଖୋଲିଲି ।

## ୨୩

P 23

ଶୁଣ ଲୋ ବୋଉ,
ମରଣହୀନ, କ୍ଷୟହୀନ, ଆକାର ହୀନ
ଏକ ମୋହନ ସୁପୁରୁଷ ସହ ମୁଁ ପ୍ରୀତି କରିଛି ।
ବସ୍ତୁତହୀନ, ଅନ୍ତହୀନ, ଅବରୋଧହୀନ, ନିଶ୍ଚିହ୍ନ
ଏକ ମୋହନ ସୁପୁରୁଷ ସହ ମୁଁ ପ୍ରୀତି କରିଛି ।
ଭବ ବନ୍ଧନହୀନ, ଭୟହୀନ, ସର୍ବତୋଭାବେ ନିର୍ଭୟ
ଏକ ମୋହନ ସୁପୁରୁଷ ସହ ମୁଁ ପ୍ରୀତି କରିଛି ।

କୂଳ ସୀମା ହୀନ, ନିଃସୀମ
ଚନ୍ନ ମଲ୍ଲିକାର୍ଜ୍ଜୁନ ମୋହନ, ସୁପୁରୁଷ ମୋର ସ୍ୱାମୀ ।
ମୃତ୍ୟୁମୁଖୀ, କ୍ଷୟମୁଖୀ, ଆଉ ଯେତେ ସ୍ୱାମୀପତି ଲଳନୀ
ଜଳନ୍ତା ନିଆଁରେ ସେମାନଙ୍କୁ ପକା ।

## ୨୪

P24

ମାଣିକ ବେଦୀରେ ସୁନାର ତୋରଣ ।
ହୀରାର ଖମ୍ବରେ ପୋହଳାର ଛପର ।
ଉପରେ ମଣି ମୁକୁତାର ଝଲ୍ଲୁଆ ।
ମୋ ବର ସାଙ୍ଗରେ ମୋ ବାହାଘର । ମୋ ବାହାଘର ।

ସୁନା କଙ୍କଣ ଆଉ ବାହା ସୂତା ବାନ୍ଧି,
କପାଳରେ ଅଲଭ୍ୟ ଅକ୍ଷତ ଲଗାଇ,
ମୋ ବର ସାଙ୍ଗରେ ମୋ ବାହାଘର ।
ମୋ ବର ନାଁ ଚନ୍ନ ମଲ୍ଲିକାର୍ଜ୍ଜୁନ ।

## ୧୫

ଦର୍ପଣ ଆଉ ତରଳ ଘିଅରେ
କି ଭେଦ ଅଛି ହେ ସାଧୁ?
ଦୀପ ଆଉ ଦୀପ୍ତି ଭେଦ କେଉଁଠି ହେ ସାଧୁ ?
ଅଙ୍ଗ ଆଉ ଆତ୍ମା ଭିନ୍ନ କିପରି ହେ ସାଧୁ ?
ଶ୍ରୀଗୁରୁ ମନ୍ତ୍ରରେ ଅଙ୍ଗ ମନ୍ତ୍ରାନ୍ୱିତ
ଅବସ୍ତୁବ ନରବସ୍ତୁବ ଭେଦ କି ସାଧୁ ?
ଚନ୍ନ ମଲ୍ଲିକାର୍ଜୁନ ରେ ମଣ୍ଡି ମଠ ଖେଳା,
ମତେ ଏ ସବୁ କହୁ କୁହାଇବାରେ କି ଲଭ ?

## ୧୬

ଫଳ ଖାଇବା ପରେ କିଏ ଗଛ କାଟିଲା, କି ବସ୍ତୁର ?
ଗୁଡ଼ପଣ ଦେଲା ସ୍ତ୍ରୀକୁ କିଏ ବାହାହେଲା, କି ବସ୍ତୁର ?
ଦେଇ ଦେଲା ଜମିକୁ କିଏ ଗୃଷ କଲା, କି ବସ୍ତୁର ?
ଚନ୍ନ ମଲ୍ଲିକାର୍ଜୁନ ଅନୁଭବ କଲାପରେ
ଦେହକୁ କୁକୁର ଖାଇଲା କି ପାଣି ପୋତରେଇଲା, କି ନବସ୍ତୁର ?

## ୨୭

ପାହାଡ଼ ଶିଖରରେ ଘର କରି
ବଣ ଜନ୍ତୁଙ୍କୁ ଡର ।
ଏବେ କି କଥା ?

ପାଣି କୂଳରେ ଘର କରି
ମଇଳା ଫେଣକୁ ଡର,
ଏବେ କି କଥା ?

ବଜାରରେ ଘର କରି
କୋଳାହଳକୁ ଲାଜ,
ଏବେ କି କଥା ?

ହେ ବନ୍ଧୁ ମଲ୍ଲିକାର୍ଜୁନ ଦେବ,
କାନ ଡେରି ଶୁଣ ।
ସସାର ଆବର୍ତ୍ତିରେ,
ନିନ୍ଦା ପ୍ରଶଂସାରେ,
ହୃଦୟ ଶାନ୍ତ ହେବ ।
ନିଷ୍ପନ୍ଦନ ହେଉ ।

—o—

## ବସବାଣ୍ଣା—

୧

ଧନୀ ତୋଳିଲେ ମନ୍ଦିର
ଗରିବ ମୁଁ କରେ ପ୍ରଭୁ କଣ ?
ମୋର ଦୁଇ ଗୋଡ଼ର ଖମ୍ବରେ
ଶରୀର ମୋ ଅଟେ ମନ୍ଦିର
ଶିର ମୋର ସୁବର୍ଣ୍ଣ କଳଶ ।
ହେ କୂଡ଼ଲସଙ୍ଗମ ଦେବ,
ସ୍ଥାବରର ବିନାଶ ଅଛି ।
ଜଙ୍ଗମର ବିନାଶ ନାହିଁ ।

୨

ଚକୋର ଚନ୍ଦ୍ର କିରଣକୁ ଝୁରେ
ଅମ୍ବୁଜ ଭାନୁ ଉଦୟକୁ ଝୁରେ
ଭ୍ରମର ପଦ୍ମ ପରିମଳ ଝୁରେ
କୂଡ଼ଲସଙ୍ଗମ ଦେବଙ୍କ ପାଇଁ
ସ୍ମରଣ କରି ମୁହିଁ ଝୁରୁଥାଇ ।

## ୩

ପଥରର ମୂରତି ଘରେ ଅଛ କି ନାହିଁ ?
ଧୂଆଁର ବନ୍ଧରେ ଘାସ,
ପଥରେ ଘରେ ଧୂଳି,
ପଥରର ମୂରତି ଘରେ ଅଛ କି ନାହିଁ ?
ଉଦ୍ଭବର ମିଛ,
ମନଭରା କାମନା,
ପଥରର ମୂରତି ଘରେ ନାହିଁ ।
ଆମ କୂଡ଼ଲସଙ୍ଗମର ଦେବତା ।

## ୪

ବଚନରେ ନାମାମୃତ ଥୋଇ,
ନୟନରେ ତୁମ ରୂପ ଥାଇ,
ସ୍ମରଣରେ ମନକୁ ନବେଶି,
କୀର୍ତ୍ତିଗୁଣ କାନକୁ ପରଶି,
କୂଡ଼ଲସଙ୍ଗମ ଦେବ,
ମୁଁ ଭ୍ରମର ତୁମ ଚରଣ କମଳ ଆବେଶୀ ।

୫

ବୃକ୍ଷ ଜଳିଲେ ସହ୍ୟ ହୁଏ
ପୃଥିବୀ ଜଳିଲେ କିଏ ସହିବ ?
ନଳ ଯଦି ପାଣି ପିଏ
ବାଡ଼ ଯଦି କ୍ଷେତ ଖାଏ
ଘରଣୀ ଯଦି ଆପଣା ଘରୁ ଚୋରି କରେ
ମା ଦୁଧ ଯଦି ବିଷ ହୋଇ ପ୍ରାଣଘାତୀ ହୁଏ
ହେ କୂଡ଼ଳ ସଙ୍ଗମ ଦେବ, କାହାକୁ କହିବ ?
ତୁମେ ରଗିଲେ
ହେ ପ୍ରଭୁ,
ମୁଁ ସହି ପାରିବି କି ?

୬

ଅପରର ଚିନ୍ତା ପାଇଁ ଚିନ୍ତା କାହିଁକି ?
ଆପଣାର ଯେତେ ଇଚ୍ଛା ଚିନ୍ତା ନାହିଁକି ?
କୂଡ଼ଳ ସଙ୍ଗମ ହସିଲେ କି ନାହିଁ ତାହାର ଚିନ୍ତା
ଭୁଇଁରେ ପାଦ ଯୋଡ଼େଇ ହେବାକୁ ଯଥେଷ୍ଟ ଚିନ୍ତା ।

୭

ନଜ ସୁଖ ଶୁଣିବାକୁ ପ୍ରଫୁଲ୍ଲ ମନ
ଅପର ସୁଖ ଶୁଣିବା ମନ କେମନ ।
ଯେ ମନ ବଶ୍ୱାସ ଅବା ଶ୍ରଦ୍ଧା ନକରେ
କୂଡ଼ଲ ସଙ୍ଗମ ଦେବ ଶରଣ ଠାରେ ।
ନଆଁରେ ପୋଡ଼ିବା ଜଳ ଏପର ମନ ।

୮

ତରଳେଇ ମୋ ମନର ଖାଦ ଦୂରକର ।
ଘଷି ଘଷି ମୋ [illegible]ନକ ଫୁଟେଇ ଦେଖ ।
କାଟି ପିଟି
ମତେ ତମ ଶରଣ ଚରଣର ଅଳଙ୍କାର କର ।
ମନେରଖ ହେ କୂଡଲ ସଙ୍ଗମ ଦେବ ।

## ୯

ତୁମ୍ଭ ମାୟା ଆବୋରିଛି ଜଗତ ।
ତୁମ୍ଭଙ୍କୁ ଆଚ୍ଛାଦିଛି ମୋର ଚିତ୍ତ ।
ସାରା ଜଗତଠାରୁ ବଳି ତୁମ୍ଭେ
ଦେଖ ତୁମ୍ଭଠୁ କେଡ଼େ ବଳି ଆମ୍ଭେ ।
ହାତୀ ସମ୍ଭାଏ ଯେହ୍ନେ ଦର୍ପଣରେ
ତୁମ୍ଭେ ସମ୍ଭାଇଛ ମୋହର ଚିତ୍ତରେ ।
ହେ କୁଡ଼ଳ ସଙ୍ଗମ ଦେବ ।

## ୧୦

ଲୁହା ପାଢିଆରେ କଖାରୁ ବାନ୍ଧିଲେ
ଛାଣ ତାହା ହୋଇବ କି ?
ସଂକୀର୍ଣ୍ଣ ମନାକୁ ଦୀକ୍ଷା ଦିଆଇଲେ
ଭକତ ଉପୁଜିବ କି ?
କଟାରୁ ଫଳର ପୋଚଣିବା ସାର
ସଂକୀର୍ଣ୍ଣ ରହିବ ମନ ।
ମନସ୍ଥନ ଲେକ ଅର୍ପିଲା ପର
ପ୍ରଭୁ କୁଡ଼ଳ ସଙ୍ଗମ ।

## ୧୧

ସାପର ବଙ୍କା ହଇ ହୁଙ୍କାକୁ ସୁନ୍ଦର
ନଈର ବଙ୍କା ସମୁଦ୍ରକୁ ସୁନ୍ଦର
କୁଡ଼ଲ ସଙ୍ଗମ ଶରଣର ବଙ୍କା
ଲିଙ୍ଗକୁ ସୁନ୍ଦର ।

## ୧୨

ଗାଲମୁଛ ଧଳା ହେବା ଆଗରୁ ।
ଓଠ ଚମ କୁଞ୍ଚ ହେବା ଆଗରୁ,
ଦେହ ଫମ୍ପାବସା ହେବା ଆଗରୁ,
ଦାନ୍ତ ପଡ଼ିବା ଆଗରୁ,
ଅଣ୍ଟା ନଇଁବା ଆଗରୁ,
ଅପର ଉପରେ ଭାର ହେବା ଆଗରୁ,
ଆଣ୍ଠୁରେ ହାତେ ବାଡ଼ରେ ହାତେ ହେବା ଆଗରୁ,
ବୁଢ଼ାପଣ ଶ୍ରୀସ୍ଥାନ କରିବା ଆଗରୁ,
ମରଣ ସ୍ପର୍ଶ କରିବା ଆଗରୁ,
କୁଡ଼ଲ ସଙ୍ଗମ ଦେବଙ୍କ ପୂଜା କର ।

## ୧୩

ହଇ ହୁଙ୍କାରେ ମାଡ଼ ଦେଲେ
ସର୍ପ କି ଜାଣ ଯାଇ ମଲେ ?
ଅଘୋର ତପ ବୃଥା ସିନା ।
ଅନ୍ତର ଆତ୍ମା ଶୁଦ୍ଧି ବିନା,
କୁଡ଼ଲ ସଙ୍ଗମ ଦେବ କେସନ
ବିଶ୍ୱାସ କରିବେ ଅଶୁଦ୍ଧ ମନ ?

## ୧୪

ପ୍ରେମ ବିନା ପୂଜା,
ସ୍ନେହ ବିନା କାର୍ଯ୍ୟ ।
ଏ ପୂଜା, ଏ କାର୍ଯ୍ୟ,
ଚିତ୍ରର ରୂପପରି ଭଇ,
ଚିତ୍ରର ଆଖୁପରି ଭଲ,
ଆଲିଙ୍ଗନ ରେ ସୁଖ ନାହିଁ ।
ଚୋବେଇବାରେ ସ୍ୱାଦ ନାହିଁ ।
କୁଡ଼ଲ ସଙ୍ଗମ ଦେବ,
ଏ ଅସତ୍ୟ ଲୋକର ଭକ୍ତି ।

## ୧୫

ପାଣି ଦେଖିଲେ ବୁଡ଼ ପକାନ୍ତି
ଗଛ ଦେଖିଲେ ବେଢ଼ା ବୁଲନ୍ତି
ଶୁଖି ଯାଉଥିବା ପାଣିରେ
ଝାଉଁଳା ଯାଉଥିବା ଗଛରେ
ଯେଉଁମାନେ ଭରସା ରଖନ୍ତି,
କୂଡ଼ଳ ସଙ୍ଗମ ଦେବ,
ସେମାନେ ତୁମକୁ କପର ଜାଣିବେ ?

## ୧୬

ଲୋକେ ପଥର ସାପରେ ଦୁଧ ଢାଳନ୍ତି
ଲୋକେ ପ୍ରକୃତ ସାପକୁ ମାର ଗୋଡ଼ାନ୍ତି ।
ଲୋକେ ଭୋକିଲା ଜଙ୍ଗମକୁ ଛଡ଼ନ୍ତି ।
ଲୋକେ ପଥର ଲିଙ୍ଗକୁ ଭୋଗ ଯାଚନ୍ତି ।

କୂଡ଼ଳ ସଙ୍ଗମ ଦେବଙ୍କ ଭକ୍ତ
ଉପରେ ସିଏ ହୁଅନ୍ତି ବିରକ୍ତ
ମାଟି ଢେଲା ଏ ପଥରରେ ବାଜି
ଗୁଣ୍ଡ ହେଲାପରି ପଡ଼ନ୍ତି ଭାଜି ।

୧୭

କହ୍ନବତ ମୁକ୍ତାହାର ମିଠ ।
କହ୍ନବଭ ମାଣିକ୍ୟର ଜ୍ୟୋତ ।
କହ୍ନବଭ ସ୍ଫଟିକ ଶଳାକା,
କହ୍ନବଭ ଈଶ୍ବର ଖୁସିରେ
କହ୍ନବେ, ହଁ ଏହ୍ନପରି ଏକା ।
କହ୍ନବତ ନକଶବ କାମ,
କପରି ଖୁସି ହୋଇବେ କୁଡ଼ଲ ସଙ୍ଗମ ?

୧୮

ଯେଉଁମାନେ ତୁମ ଉପରେ ରଟନ୍ତି
ସେମାନଙ୍କୁ ଲଗି ଲଭ କ'ଣ ?
ତୁମର କ ଲଭ ?
ସେମାନଙ୍କର କ କ୍ଷତ ?
ଦେହର ଲଗ ବଡ଼ପଣିଆ ନଷ୍ଟକରେ ।
ମନର ଲଗ ବୁଦ୍ଧି ନଷ୍ଟକରେ ।
ଘର ନିଆଁ ନିଜ ଘର ନପୋଡ଼ି
ପଡ଼ିଶାଘର ପୋଡ଼ିବ ନାହିଁ ।
କୁଡ଼ଲ ସଙ୍ଗମ ଦେବ ।

## ୧୯

ପାପ କାମୁଡ଼ିଥିବା ଲୋକକୁ ତୁମେ କଥା କୁହାଇ ପାର ।
ଭୂତ ଲଟିଥିବା ଲୋକକୁ ତୁମେ କଥା କୁହାଇପାର ।
ଧନଗର୍ବ ଲାଗିଥିବା ଲୋକକୁ କଥା କୁହାଇବା ଅସମ୍ଭବ, ପ୍ରଭୁ ।
ଗରିବ ଚଣିଆର ଗୁଣିଆ ଆସିଲେ
ସେ ବାବଦୂକ ହୁଏ,
ହେ କୂଡ଼ଲ ସଙ୍ଗମ ଦେବ ।

## ୨୦

ମର୍ତ୍ତ୍ୟଲୋକ କର୍ତ୍ତାଙ୍କର ଟଙ୍କାଶାଳ ।
ଯାହା ଏଠି ଚଳିବ ତାହା ସେଠି ଚଳିବ ।
ଯାହା ଏଠି ଚଳିବ ନାହିଁ ତାହା ସେଠି ଚଳିବ ନାହିଁ ।
କୂଡ଼ଲ ସଙ୍ଗମ ଦେବ ।

୨୧

ତାର ବଚନରେ ଗୁଡ଼
ହୃଦୟରେ ବିଷ,
ଆଖିର ଚଞ୍ଚଳ ଭ୍ରୁଭଙ୍ଗୀରେ ସେ ଜଣକ ମନ ମୋହେ
ମନରେ ସେ ଅନ୍ୟର କାମନା କରେ
ବଚନରେ ଆଉ ଜଣକ ସହ ଭାବ କରେ ।
ତାର ତନ ଏକ ଦଗରେ
ମନ ଅନ୍ୟ ଦଗରେ
ବଚନ ତୃତୀୟ ଦଗରେ ।
ଯେଉଁ ମଣିଷ ମେଣ୍ଢା
ଏପରି ସ୍ୱୈରିଣୀ ମନର ମାଲିକ ବୋଲି ବିଶ୍ୱାସ କରନ୍ତି
ସେମାନଙ୍କୁ କ'ଣ କହିବ ?

୨୨

ପିଲେଇଠ ବେଶ୍ୟା
ଧନ ଲୋଭରେ ବହୁ ପୁରୁଷ ଗ୍ରହଣ କଲେ
ପିଲାକୁ ଗର୍ଭରେ
କେହି ତାକୁ ପାଇବେ ନାହିଁ ।
ସେ ଥରେ ପିଲାକୁ ଶାନ୍ତ କରିବ ।
ସେ ଥରେ ଭଗବାନ ପାଖରେ ଶୋଇବ ।
ଧନ ଲୋଭ ଗ୍ରହେ ନାହିଁ,
କୁଟିଳ ଦର୍ଶନ ଦେବ ।

## ୨୩

ମୋ ଦେହକୁ କେତାରର ଦଣ୍ଡ କର, ପ୍ରଭୁ ।
ମୋ ମୁଣ୍ଡକୁ ଲଉତୁମ୍ବା କର ।
ମୋ ଶିରକୁ ତାର କର ।
ମୋ ଆଙ୍ଗୁଠିକୁ ବଜେଇବା କାଠି କର ।
ମତେ ତୁମ କ୍ରୋଡରେ ଚପି ଧର
ବତିଶ ରାଗର ସୃଷ୍ଟି କର
ହେ କୁଡ଼ଲ ସଙ୍ଗମ ଦେବ ।

## ୨୪

ମୁଁ କର୍ତ୍ତା ନୁହେଁ,
ମୁଁ ଦାତା ନୁହେଁ,
ମୁଁ ଭିକାରୀ ନୁହେଁ,
ପ୍ରଭୁ ।
ସବୁ ତୁମ କରୁଣା ।
ଚାକରାଣୀ ଅସୁସ୍ଥ ହେଲେ ଘରଣୀ ଘରକାମ କଲାପରି
କୁଡ଼ଲ ସଙ୍ଗମ ଦେବ,
ତୁମେ ହିଁ ସବୁ କାମ କର ।

## ୨୫

ନାଚ ନାଚ ପାଦେ କଷ୍ଟ ନାହିଁ
ଦେଖି ଦେଖି ଆଖି କ୍ଳାନ୍ତ ନୁହେ ।
ଗାଇ ଗାଇ ଜିଭେ କ୍ଳେଶ ନାହିଁ
ମୁଁ କ'ଣ କରିବ ? ମୁଁ କ'ଣ କରିବ ?
ହାତେ ପୂଜି ମନ କ୍ଳାନ୍ତ ନୁହେ
ମୁଁ କ'ଣ କରିବ ? ମୁଁ କ'ଣ କରିବ ?
ହେ କୂଡ଼ଲ ସଙ୍ଗମ ଦେବ,
ମନ ମୋର ତୁମ ଦେହ ତଳ
କପର ବେଗେ ତୁମଠି ସମ୍ଭାଇବ ସାଇଁ ।

## ୨୬

ଜମ୍ବୁବର ବଳୀ ମେଣ୍ଢା
ନିକଟ ମରଣ ନଜାଣି
ଆପଣା ପୋଡ଼ା ପେଟ ପାଇଁ
ତୋରରେ କଅଁଳ ପତ୍ର ଗ୍ରେଟବେଳା ।
ପ୍ରାଣୀର ଜନ୍ମଦନ ମରଣ ।
ଘାତକ କ'ଣ ଅମର ?
ହେ କୁଡଲ ସଙ୍ଗମ ଦେବ ।

## ଗୌଣ ବଚନକାର—

- ଅମ୍ବିଗର ଚୌଡ଼େୟା
- ଆୟ୍ଦକକ୍କି ମାରୟ୍ୟା
- ଉରିଲିଙ୍ଗ ପେଦ୍ଦି
- ଚନ୍ନ ବସବାଣ୍ଣା
- ହଡ଼ପଦ ଅପଣ୍ଣା
- ହାବନ ହାଲ କଲ୍ଲୟ୍ୟା
- ମାଡ଼ିବାଲୟ୍ୟା
- ମୁକ୍ତାୟକ୍କା
- ଷଣ୍ମୁଖସ୍ୱାମୀ
- ଦେବର ଦାସୀମୟ୍ୟ

# ଅମ୍ବିଗର ଚୌଡ଼େୟ୍ୟା

୧

ବନ୍ଧ ନଥିବା ଥର ପାଣି ନଥିବା ମହାନଦୀକୁ
ମୁଁ ଅଦେଖା ନାଉରୀ ଆସିଛି ।
ତୁମ ଭିଡ଼ୁଥିବା ଗୁଡ଼ୁଥିବା ମଣକୁ ଘାଟ କଉଡ଼ି କଲେ
ମୁଁ ଏ ମହା ପ୍ରବାହର ଅପର ପାରକୁ ନେଇଯିବି ।
ଶବ୍ଦହୀନ, ସୀମାହୀନ ଗ୍ରାମରେ ମୁଁ ତୁମକୁ ଛାଡ଼ିବି ।
ଅମ୍ବିଗର ଚୌଡ଼େୟ୍ୟା ଭଣେ ।

୨

ଦରିଦ୍ରର ଭୋଜନ ଚିନ୍ତା
ପେଟ ପୂରିବା ଲୋକର ପିନ୍ଧିବା ଚିନ୍ତା
ପିନ୍ଧିବା ଲୋକର ସଞ୍ଚିବା ଚିନ୍ତା
ସଞ୍ଚିବା ଲୋକର ଘରଣୀ ଚିନ୍ତା
[illegible] ଲୋକର ସନ୍ତାନ ଚିନ୍ତା
ସନ୍ତାନବନ୍ତର ଭବିଷ୍ୟତ ଚିନ୍ତା
ସବୁଥିବା ଲୋକର ହଜିବା ଚିନ୍ତା
ହଜିବା ସମାଧାରେ ମରଣ ଚିନ୍ତା
ଏସବୁ ଚିନ୍ତାରେ ସଢୁଥିବା ସବୁ ଲୋକଙ୍କୁ ଦେଖିଲି ।
ଶିବ ଚିନ୍ତାରେ କାଳ କାଟୁଥିବା ଜଣେ ହେଲେ ଦେଖିଲି ନାହିଁ ।
ଶିବ ଶରଣ ଅମ୍ବିଗର ଚୌଡ଼େୟ୍ୟା
ଏକଥା କହିଲେ ।

## ଆୟ୍ଦକ୍କି ମାରୟ୍ୟା —

୧

କାୟକେ ମଗନ ହୁଏ ଯେ ଜନ
ଭୁଲିବା ଭଲ ଗୁରୁ ଦରଶନ ।
ଲିଙ୍ଗ ପୂଜାକୁ ଭୁଲିଯିବା ଭଲ
ଜଙ୍ଗମ ପ୍ରତି କର୍ତ୍ତବ୍ୟକୁ ଭୁଲି ।
କାୟକ ନିଜେ ଅଟଇ କୈଲାଶ
ଅମରେଶ୍ୱର ଲିଙ୍ଗର କାୟକରେ ବାସ ।

## ଉରିଲିଙ୍ଗ ପେଦ୍ଦି —

୧

ଅମୃତର କ୍ଷୁଧା ?
ଜଳର ତୃଷ୍ଣା ?
ମହତ ଲୋକର ଶତ୍ରୁ ବାସନା ?
ସଦ୍‌ଗୁରୁ କରୁଣା ଅଛି
ଲିଙ୍ଗାର୍ଚ୍ଚନରତ ମହାଶରଣର ମୁକ୍ତିକାମନା ?
ହେ ଉରିଲିଙ୍ଗ ପେଦ୍ଦି ପ୍ରିୟ ବିଶ୍ୱେଶ୍ୱର,
ମୁକ୍ତି ଯେଉଁଠି ସ୍ୱୟଂ,
ଯେ ସହଜ ସୁଲଭ,
ତୃପ୍ତି ଆପ୍ୟାୟନରେ ତାର କି ପ୍ରୟୋଜନ ?

## ଚନ୍ନବସବାଣ୍ଣା —

୧

ବିନା ପାହାଚ ବିନା ଦଉଡ଼ିରେ ପ୍ରାଣଲିଙ୍ଗ ଅପହଞ୍ଚ ।
ଶବ୍ଦର ପାହାଚ ଚଢ଼ିଆସିକରି
ଦ୍ରବ୍ୟଭକ୍ତମାନେ ଦେବଲୋକକୁ ବାଟ କରୁଛନ୍ତି ।
ମର୍ତ୍ତ୍ୟଲୋକ ମନର ମଇଳା ପରିଷ୍କାର ପାଇଁ
କୂଡ଼ଲ ଚନ୍ନ ସଙ୍ଗମଦେବଙ୍କ ଶରଣ
ଶବ୍ଦ ଓ ଗୀତର ଜ୍ୟୋତି ପ୍ରକାଶ କରୁଛନ୍ତି ।

## ହଡପଦ ଅପ୍ପଣ୍ଣା

୧

ଭିତରର ନିଆଁ ଗଛକୁ ପୋଡ଼ିଥିଲା
ଭିତରର ନିଆଁ ଘର ପୋଡ଼ିଥିଲା
ମାଟିକାନ୍ଥ ପଡ଼ିଯାଇଛି
ନିଆଁ ଲିଭି ଯାଇଛି
ସ୍ୱୟଂପ୍ରକାଶ ପଥ ରହି ଯାଇଛି
ନିଆଁ ଆସି ମୋ ପାଦୁକରେ ରହିଛି
ମୁଁ ଆଶ୍ଚର୍ଯ୍ୟ ହୋଇ ଦେଖୁଛି
ବସବପ୍ରିୟ କୁଡ଼ଲ ସଙ୍ଗମ ।

## ହାବନ ହାଲ କଲ୍ଲୟ୍ୟା—

୧

ଚେତନା ଗୁରୁ, ଆତ୍ମର ଶିଷ୍ୟ
ଜ୍ଞାନ ଲିଙ୍ଗ, ସନ୍ତୋଷ ତପ
ସମତା ଯୋଗ ।
ନବୁଝି ଏହା,
ମୁଣ୍ଡ ଲଣ୍ଡାକଲେ କି ହେବ ତାହା ?
ମହାଲିଙ୍ଗ କଲ୍ଲେଶ୍ୱର ଦେବ ହସିବା ସାର ।

## ମାଡ଼ିବାଳେୟ୍ୟା ମାଚେୟ୍ୟା

୧

ଯେତେବେଳେ ଆଦି ଅନାଦି ନଥିଲେ,
ଯେତେବେଳେ ଶୂନ୍ୟ ମହାଶୂନ୍ୟ ନଥିଲେ,
ଯେତେବେଳେ ସାଧ୍ୟ ଅସାଧ୍ୟ ନଥିଲେ,
ଯେତେବେଳେ ରୂପ ଅରୂପ ନଥିଲେ,
ଯେତେବେଳେ ସ୍ଥୂଳ ସୂକ୍ଷ୍ମ ନଥିଲେ,
ଯେତେବେଳେ ସାକାର ନିରାକାର ନଥିଲେ,
ଯେତେବେଳେ ବାକ୍ ଜନ୍ମ ହୋଇ ନଥିଲେ,
ଯେତେବେଳେ ଦ୍ୱୈତ ଅଦ୍ୱୈତ ନଥିଲେ,
ଯେତେବେଳେ ଶଙ୍କର, ଶଶୀଧର, ଈଶ୍ୱର, ଗଣାଧୀଶ ନଥିଲେ,
ଯେତେବେଳେ ବର୍ତ୍ତନ ନିବର୍ତ୍ତନ ନଥିଲେ,
ଯେତେବେଳେ ଉମା ବାହାହୋଇ ନଥିଲେ,
ଯେତେବେଳେ କାହାର ନାମ, ସୀମା ନଥିଲା,
ହେ କଲିଦେବ,
ତୁମେ ସେତେବେଳେ ନିଃଶବ୍ଦଥିଲ ।

୧

## ମୁକ୍ତାସ୍ତବକ

ଏଇ ମରଲୋକ ଜ୍ଞାନକୁ ଗଳାରେ ଭରି
ଘାକୁଳ କରୁଛୁ ।
ଜ୍ଞାନ କପଟ ବନ୍ଧୁବ ଜାଣେ ନାହିଁ ।
ପୃଥିବୀ ନାଶ ଯାଉଛୁ ।
ମୁଁ କପଟ କନ୍ଧୁବ ମତେ କହ ।
ଆଲୁଅ ଓ ଅନ୍ଧାର ଦେଖି
ମୋ ମନରେ ସନ୍ଦେହ ହେଉଛି ।
ହେ ଅଜଗନ୍ଧ,
ତୁମ ଯୋଗ ମୋ ଆଖିରେ ଅଢପୂର୍ଣ୍ଣଳ ବାଢ
ମତେ ଦର୍ପଣ ଦେଖାଉଛି ।

୨

ବନ୍ଦ ପଞ୍ଜ ଖୋଲା ହୋଇଥିବା କୁଥରେ
        ପାହାଚର ପ୍ରୟୋଜନ କେଉଁଠି ?
ଜ୍ଞାନଲାଭ କରିଥିବା ମନର
        କଣ ପୁନର୍ଜନ୍ମ ସମ୍ଭବ ?
ଦୀପ ଥିବା ଘରକୁ
        କଣ ଅନ୍ଧାର ଘୋଡ଼େଇବ ?
ଆତ୍ମ ସଙ୍ଗ ସ୍ୱଭାବତଃ ତଦ୍‌ଗତ ଭାବ ହେଲେ
        ବ୍ରହ୍ମ ପରବ୍ରହ୍ମ ହେବା ପ୍ରଶ୍ନ କେଉଁଠି ?
ହେ ଅଜଗନ୍ମା ।

୩

ପାଣି କଣ୍ଢେଇକ ନକାଞ୍ଚନ ଘୁଙ୍ଗୁର ପିନ୍ଧେଇ
ଶୂନ୍ୟ କଣ୍ଢେଇ ହାତରେ ଖେଳେଇବାକୁ ଦେଇଛୁ ।
କର୍ପୂର କଣ୍ଢେଇ ପାଇଁ ନିଆଁର ସିଂହାସନ ।
ନିଆଁ ତରଳି ଯାଉଛି, କର୍ପୂର ଅଛି ।
ମୋ ଭାଇ ଅଜଗନ୍ମର ଆଶ୍ଚର୍ଯ୍ୟ ଯୋଗ ।

## ଷଣ୍ମୁଖ ସ୍ୱାମୀ—

୧

ମନ ଗିଳିଲା ରୂପ
ରୂପ ଗିଳିଲା ମନ ।
ପରବ୍ରହ୍ମରେ ମିଳିଲା ।
ଉଭୟ ରୂପ ଓ ମନ ।
ତେଣୁ ମୁଁ କାରର ସ୍ଥାନ କାହିଁ
ହେ ଅଖଣ୍ଡେଶ୍ୱର ।

୨

ଅନ୍ତରଙ୍ଗରେ ଅଖଣ୍ଡ ପରିପୂର୍ଣ୍ଣ ଜ୍ଞାନ ରଖି
ବହିରଙ୍ଗରେ ସତ୍ୟ, ସଦାଚାର ଆଚରଣ କରି
ଗତ ଆଗତର ଶିଙ୍କୁଳି ଛିଣ୍ଡେଇ
ଆନନ୍ଦକୁ ଆପଣା ଦେହ କରି
ଅଭେଦ୍ୟ ଲିଙ୍ଗରେ ଉଦ୍‌ଭାସିତ
ଅପ୍ରମାଣ ଶରଣକୁ ଦେଖାଇ
ମୋତେ ରକ୍ଷାକର ।
ହେ ଅଖଣ୍ଡେଶ୍ୱର ।

୩

କର୍ମରେ ବଚନକୁ ଭଗ,
ବଚନ ମଧ୍ୟେ କର୍ମ ଭଗ,
ବଚନ କର୍ମେ ପରିପୂର୍ଣ୍ଣତା ଭଜ,
ଯେ ଲିଙ୍ଗ ସଙ୍ଗ ଲାଭ କରେ,
ଅଖଣ୍ଡେଶ୍ୱର,
ସେ ତୁମ୍ଭର ଶରଣ ।

୪

ମହତ ମହାଲିଙ୍ଗ ପାଇଁ । ମନ ପୀଠହୋଇ ।
ତନୁ ଶିବାଳୟ ହୋଇ । ସ୍ମରଣ ପୂଜା ହୋଇ ।
ଧ୍ୟାନ ତୃପ୍ତି ହୋଇ ।
ତୁମ ଅବିରଳ ଦିବ୍ୟ ଆଲୋକରେ ଜଡ଼ି
ସମୁଦ୍ରେ ଯେସନ ପୂର୍ଣ୍ଣକୁମ୍ଭ ବୁଡ଼ି ।
ହେ ଅଖଣ୍ଡେଶ୍ୱର ।
ତୁମ ମୋ ଭେଦ ଭୁଲି ମୁଁ କିଛୁ ଜାଣିଲି ନାହିଁ !

ଦେବର ଧାରୀମନ୍ତ୍ର—

୧

ମା ପେଟରେ ଥିବା ଛୁଆ
ମା' ଛୁଆର ଚେହେରା ଜାଣେ ନାହିଁ ।
ମା'ର ଚେହେରା ଜାଣେ ନାହିଁ ।
ମାୟା ମୋହ ଗ୍ରସ୍ତ ଲୋକ
ଠାକୁରଙ୍କୁ ଜାଣେ ନାହିଁ ।
ଠାକୁର ଏପରି ଲୋକକୁ ଚହ୍ନିବ ନାହିଁ ।
ରାମନାଥ ।

୨

ଜଳନ୍ତା ଅଙ୍ଗାରରେ ଘାସ ।
ଘାସ କେଣ୍ଡା ନିଆଁରେ ମିଶିଗଲା ।
ଗୁରୁ ଚରଣରେ ତନୁ ।
ଘାସକେଣ୍ଡା ନିଆଁ ହେଲାପରି
ସର୍ବାଙ୍ଗ ଲିଙ୍ଗରେ ମିଶିଗଲା ।
ହେ ରାମନାଥ ।

୩

ନିଆଁ ପୋଡ଼ି ଜାଣେ, ବୁଲି ଜାଣେ ନାହିଁ ।
ପବନ ବୁଲି ଜାଣେ, ପୋଡି ଜାଣେ ନାହିଁ ।
ନିଆଁ ପବନ ଏକାଠି ନୋହିଲେ ଗତି ଅସମ୍ଭବ ।
ହେ ରାମନାଥ,
ମଣିଷ ଏପରି କ୍ରିୟା ଜ୍ଞାନ ଭେଦ କିପରି ଜାଣିବ ?

୪

ଦୁଧ ଆଉ ଲମ୍ବାବାଳ ଦଶିଲେ ମାଇପି ।
ଦାଢି ନଶ ଦଶିଲେ ପୁରୁଷ ।
ଉଭୟଙ୍କ ଭିତରର ଆତ୍ମା
ମାଇପି ନୁହେ, ପୁରୁଷ ନୁହେ ।
ରାମ ନାଥ ।

୫

ଦେହଥିଲେ ଲୋଭ ଅଛି ।
ଦେହଥିଲେ ମିଛ ଅଛି ।
ହେ ରାମନାଥ ।
ମୋର ଦେହ ଅଛି,
ଏଥିପାଇଁ ଅଛା କର ନାହିଁ ।
ଥରକପାଇଁ
ମୋ ପରି ଦେହ ଧରି ଦେଖ ।

୬

କପଟ ପଡ଼ିଲେ ଶମ୍ଭୁ ଗୋସାଇଁ ଗୋସାଇଁ ।
ସାଙ୍ଗୋପାଙ୍ଗ ଧରି ଯେବେ ବସନ୍ତି ପଳାଏ
ଝୁଣ୍ଟିଲେ ବି ତୁମକୁ ନ ଦେଖିବେଟି କେହ୍ନ ।
ରାମନାଥ ।



# ଲେଖକ ପରିଚିତି

ବଚନକାରମାନେ ଭଣିତାରେ ଆପଣାର ପରିଚୟ ଦେଇଯାଇଛନ୍ତି । ଆପଣା ଆପଣା ଇଷ୍ଟ ଲିଙ୍ଗଙ୍କର ନାମକରଣରୁ ସହଜେ ରଚୟିତାଙ୍କୁ ଚିହ୍ନି-ହେବ । ମହାଦେବୀ ଅକ୍କାଙ୍କର ଚନ୍ନ ମଲ୍ଲିକାର୍ଜୁନ, ଅଲ୍ଲମ ପ୍ରଭୁଙ୍କର ଗୋହ୍ୱେଶ୍ୱର, ବସବାଣ୍ଣାଙ୍କର କୂଡ଼ଲ ସଙ୍ଗମ ଦେବ ହେଉଛନ୍ତି ଇଷ୍ଟଦେବତା ଓ ପ୍ରତ୍ୟେକ ବଚନର ଭଣିତାରେ ଏହାଙ୍କର ଉଲ୍ଲେଖ ଅଛି । ସେହିପରି ଉରିଲିଙ୍ଗ ପେଦ୍ଦି ପ୍ରିୟ ବିଶ୍ୱେଶ୍ୱର, କୂଡ଼ଲ ଚନ୍ନ ସଙ୍ଗମଦେବ, ବସବପ୍ରିୟ କୂଡ଼ଲ ସଙ୍ଗମ, ମହାଲିଙ୍ଗ କଲ୍ଲେଶ୍ୱର ଦେବ, କଳିଦେବ, ଆଖଣ୍ଡେଶ୍ୱର, ରାମନାଥ ଭଣିତାରୁ ଯଥାକ୍ରମେ ଉରିଲିଙ୍ଗ ପେଦ୍ଦି, ଚନ୍ନ ବସବାଣ୍ଣା, ହଡ଼ପଦ ଆପ୍ପଣା, ହାବିନହାଳ କଲ୍ଲୟ୍ୟା, ମାଢବାଲା ମାଚେୟ୍ୟା', ଷଣ୍ମୁଖସ୍ୱାମୀ ଓ ଦେବର ଦାସୀମୟ୍ୟଙ୍କୁ ସହଜେ ବୁଝିହେବ । ମୁକ୍ତାୟକ୍କା ଓ ଅମ୍ବିଗର ଚୌଡ଼େୟ୍ୟା ଏମାନଙ୍କ ମଧ୍ୟରେ ବ୍ୟତିକ୍ରମ । ମୁକ୍ତାୟକ୍କା ଆପଣା ଭାଇ ମହାଯୋଗୀ ଅଜଗଣ୍ଣାଙ୍କୁ ଉଦ୍ଦେଶ୍ୟ କରି ବଚନ ରଚନା କରିଛନ୍ତି । ଅମ୍ବିଗର ଚୌଡ଼େୟ୍ୟା ନିଜକୁ ଶିବଶରଣ କହି ଆପଣା ନାମରେ ବଚନ ଭଣିତା କରିଛନ୍ତି ।

ଅମ୍ବିଗର ଚୌଡେୟ୍ୟା ନିଜେ ନାଉରୀଥିଲେ । ଏହାବ୍ୟତୀତ ତାଙ୍କ ସମ୍ବନ୍ଧରେ ଅତି ଅଳ୍ପ ତଥ୍ୟ ମିଳେ । ତେଣୁ ତାଙ୍କ ବିଷୟରେ ସ୍ୱତନ୍ତ୍ର ଭାବେ କିଛି କୁହାଯାଇ ନାହିଁ । ଅନ୍ୟାନ୍ୟ ବଚନକାରଙ୍କ ଜୀବନରୁ ଚମତ୍କାର ଜଟିଳମିଥ୍ୟା ବାଦ ଦେଇ ଯେତକ ସମ୍ଭବ ତଥ୍ୟ ପରିବେଷଣ କରାଯାଇଛି ।

# ଆଲ୍ଲମପ୍ରଭୁ

ଆଲ୍ଲମ ପ୍ରଭୁ ସମସ୍ତ ବଚନକାରଙ୍କ ଗୁରୁ କହିଲେ ଅତ୍ୟୁକ୍ତି ହେବନାହିଁ । ଶିମୋଗା ଜିଲ୍ଲାର ବଲ୍ଲିଗାଓଁ ଗାଁରେ ଅଲ୍ଲମ ଜନ୍ମଗ୍ରହଣ କରିଥିଲେ । ସେ କଲ୍ୟାଣ ଯାଇ ବସବାଣ୍ଣା ଓ ଅନ୍ୟାନ୍ୟ ଶିବଶରଣମାନଙ୍କ ସାହଚର୍ଯ୍ୟ ଲାଭ କଲା ପରେ ବିଭିନ୍ନ ସ୍ଥାନ ପରିଭ୍ରମଣରେ ଯାଇଥିଲେ । ତାଙ୍କର ଏହି ଭ୍ରମଣ ତୀର୍ଥଯାତ୍ରା ବା ବୁଲିବା ପାଇଁ ବୁଲିବା ନଥିଲା । ଏହାଥିଲା ସ୍ଥାନ ଶୁଦ୍ଧି । ସେ ଯେଉଁ ସ୍ଥାନକୁ ଯାଉଥିଲେ ସେଠାରେ ମନର ଅନ୍ଧାର, ହୃଦୟର ବିକଳତା, ଆତ୍ମାର ଅଶୁଦ୍ଧି ସବୁ ଦୂର ହୋଇ ଯାଉଥିଲା । ତାଙ୍କର ଚାଲିବା ବାଟରେ ପାଦଚିହ୍ନ ପଡୁ ନଥିଲା, ଠିଆହେବା ଯାଗାରେ ଛାଇ ପଡୁ ନଥିଲା, ଚାଲିବାରେ ଗତି ନଥିଲା; କଥା କହିବାରେ ଶବ୍ଦ ନଥିଲା । ଚନ୍ନବସବାଣ୍ଣା ପ୍ରଭୁଦେବଙ୍କୁ ଲକ୍ଷ୍ୟକରି ଗୋଟିଏ ବଚନରେ କହିଅଛନ୍ତି—

"ସଂସାରର ମଇଳା ବାଟରେ ପାଦ ନଦେଇ ଥିବାରୁ
 ଲୋକେ କହନ୍ତି ପାଦ ନାହିଁ ।
ଅପର ଲୋକର ଧନ ସମ୍ପତ୍ତି ନେଇ ନଥିବାରୁ
 ଲୋକେ କହନ୍ତି ହାତ ନାହିଁ ।
ସଂସାର ସୁଖାଦ ବିଷୟରେ ନ ଶୁଣୁ ଥିବାରୁ
 ଲୋକେ କହନ୍ତି କାନ ନାହିଁ ।
ଦୁର୍ଗନ୍ଧି ବିଷୟ ପ୍ରତି ଆକୃଷ୍ଟ ନ ହୋଇ ଥିବାରୁ
 ଲୋକେ କହନ୍ତି ନାକ ନାହିଁ ।
ଅପରେ ସ୍ତ୍ରୀକୁ ଆଲିଙ୍ଗନ ନକରିଥିବାରୁ
 ଲୋକେ କହନ୍ତି ହୃଦୟ ନାହିଁ ।
କୁଡ଼ଲ ସଙ୍ଗମ ଦେବଙ୍କ ପ୍ରତ୍ୟକ୍ଷରେ ମୁଁ କହୁଛି
ପ୍ରଭୁ ଦେବଙ୍କ ସଙ୍ଗୁଡ଼ି ପ୍ରସାଦ ପାଇ ମୁଁ ଧନ୍ୟ ।
ହେ ସଙ୍ଗନ ବସବାଣ୍ଣା, ଏହା ମନେରଖ ।"

ଶିବ ଯୋଗର ପରମ ପ୍ରକାଶ ପାଣିରେ ଦୃଢ଼ ପ୍ରତିବିମ୍ବପରି, ଏହା ପାଣିରେ ଥାଇ ମଧ୍ୟ ଯେପରି ପାଣିର ପ୍ରକୃତି ଏହାକୁ ସ୍ପର୍ଶକରି ପାରେ ନାହିଁ, ସେହିପରି ପ୍ରଭୁପାଦ ଆଲ୍ଲମ ସଂସାରରେ ଥାଇ ମଧ୍ୟ ସଂସାର ଛୁଆଁର ବାହାରେ "ବ୍ରହ୍ମବେଦ ବ୍ରହ୍ମୈବ ଭବତି," ପରବ୍ରହ୍ମଙ୍କୁ ଜାଣିବା ବ୍ୟକ୍ତି ବ୍ରହ୍ମର ଅଂଶ ।

ଆତ୍ମାନୁଭୂତିରେ ସେ ପରମ ଆନନ୍ଦ, ପରମ ପୁରୁଷାର୍ଥର ଅଧିକାରୀ । ବସବ ଓ ଅନ୍ୟ ଶିବଶରଣମାନେ ଅଲ୍ଲମଙ୍କ ପାଇଁ ଏକ "ଶୂନ୍ୟ ସିଂହାସନ" ପ୍ରସ୍ତୁତରେ ବ୍ୟସ୍ତ ଥିଲବେଳେ ଆଲ୍ଲମ ମଧ୍ୟ ସେମାନଙ୍କୁ ପରୀକ୍ଷା କରିବାପାଇଁ ଇଚ୍ଛା କରିଥିଲେ । ଏହି "ଶୂନ୍ୟ ସିଂହାସନ" ପ୍ରକୃତରେ ବସବାଣ୍ଣାଙ୍କ ବିଭୂତ, ଦେହ, ମନ ଓ ଆତ୍ମାର ବିକାରକୁ ସଂପୂର୍ଣ୍ଣ ଭାବେ ଲିଙ୍ଗରେ ବିସର୍ଜନ ଦେଇ ସଂଯମେନାଙ୍କନ, କ୍ଷାନ୍ତା, ଶାନ୍ତି ମଧ୍ୟରେ ଅଦ୍ୱୈତ ସିଦ୍ଧି ଲାଭକରି, ବ୍ରହ୍ମରନ୍ଧ୍ର ଦ୍ୱାର ଖୋଲି ପରମାନୁଭବ ପାଇଁ ଅପେକ୍ଷା କରିବାକୁ 'ଶୂନ୍ୟ ସିଂହାସନ' ରଚନା ବୋଲି ବଚନକାରମାନେ କହିଛନ୍ତି । ( ହାଡ଼ ପାଦ ଆପଣ୍ଣା, ନଂ ୧୭ ) ଏହିପରି ବାର ବର୍ଷ ଅପେକ୍ଷା ପରେ ପ୍ରଭୁଦେବ ଯେତେବେଳେ କଲ୍ୟାଣ ଫେରିଛନ୍ତି ସେତେବେଳେ ସେ କୁରୂପ, କଦାକାର ଓ ତାଙ୍କର ବ୍ୟବହାର ସଂପୂର୍ଣ୍ଣ ବାତୁଳ । ଆଲ୍ଲମ କହିଛନ୍ତି—

ଭଲ ମନ୍ଦ ନଷ୍ଟସ୍ୱପ୍ନ
ଦୁଃଖ, ଆହାର ତା'ର ଧାରରେ ମନ ।
ଆଲୁଅ, ଅନ୍ଧାରର ଭେଦ
ଆଖି ଆଗେ ଥିଲେ ସୁଦ୍ଧା ନୁହଇ ବୋଧ ।
ସାଜ ହିନା ବାହାର ପାଇଁ ।
ଆଲୁଅରେ ସାଜ ଖାଲି ବ୍ୟର୍ଥ ହୋଇ ।
ହେ ଗୋହେଶ୍ୱର ।"

ଗ୍ରମରସଙ୍କ ମତରେ ପ୍ରକୃତ ଭକ୍ତ ବା ଶରଣ ବାହ୍ୟରୂପ ଭେଦକରି ଅନ୍ତର୍ନିହିତ ଜ୍ୟୋତିର୍ଲିଙ୍ଗ ଦର୍ଶନରେ ସମର୍ଥ ହେବା ଉଚିତ । ଏହି ପରୀକ୍ଷା ପାଇଁ ଆଲ୍ଲମଙ୍କର ଛଦ୍ମବେଶ ।

ବସବଙ୍କ ନଅରରେ ସମବେତ ବହୁତହଜାର ଶିବଶରଣ ଏହି ବିକାଟେଙ୍କୁ "ମହେନ୍ଦ୍ର ଜାଲିକ" କହି ଚିହ୍ନି ନପାରି ଗ୍ଲଲଗଲେ । ଏହି ବିଷୟରେ ଲେଖା ହୋଇଥିବା ବଚନ ମାନଙ୍କରୁ ଦେଖାଯିବ ଯେ ପ୍ରଭୁପାଦ ଓ ଚନ୍ନ ବସବାଣ୍ଣାଙ୍କ ମତରେ ବାହାରର ଭେକ ଜଙ୍ଗମର ପ୍ରକୃତ ପରିଚୟ ନୁହେଁ, କିନ୍ତୁ ବସବାଣ୍ଣା ତାଙ୍କର ଅସୀମ ଭକ୍ତି ଓ କରୁଣା ହେତୁ ମତ ଦେଇଛନ୍ତି ଯେ ଅନେକ ସମୟରେ ବାହ୍ୟ ଉପଗ୍ରର ଅନ୍ତରଙ୍ଗ ଶୁଦ୍ଧିରେ ସହାୟକ ହୋଇପାରେ । ସେ ଯାହା ହେଉନା କାହିକି, ବସବ ଆଲ୍ଲମଙ୍କୁ ଚିହ୍ନିବା ପରେ ତାଙ୍କୁ ଖାଇବାକୁ

ନିମନ୍ତ୍ରଣ କଲେ, ପ୍ରଥମେ "ଯେ ଶର ସନ୍ତୋଷ, ଯାହାର କ୍ଷୁଧା ବା ତୃଷ୍ଣା ନାହିଁ ତାର ଉପାସନରେ କି ପ୍ରୟୋଜନ" କହି ଆଲ୍ଲମ ଏହି ନିମନ୍ତ୍ରଣ ପ୍ରତ୍ୟାଖ୍ୟାନ କଲେ । କିନ୍ତୁ ବସବଙ୍କର ଦିବ୍ୟାନୁଭୂତିରେ ସନ୍ତୁଷ୍ଟ ହୋଇ ଯେତେବେଳେ ସେ ଏ ନିମନ୍ତ୍ରଣ ସ୍ୱୀକାର କଲେ କଥିତଅଛି ଯେ ବସବ ଖାଇବାକୁ ଦେଇ ଦେଇ କ୍ଳାନ୍ତ ହୋଇ ପଡ଼ିଲେ । ତେବେ ବି ସେ ମହା କ୍ଷୁଧାର ସନ୍ତୋଷ ନାହିଁ । ଏକ ଶହ ଛୟାନବେ ହଜାର ଜଙ୍ଗମଙ୍କ ପାଇଁ ପ୍ରସ୍ତୁତ ଖାଦ୍ୟ ଯେତେବେଳେ ଶେଷ ହେଲା, ଭଣ୍ଡାରର ଖାଦ୍ୟ ଶେଷ ହୋଇ ଯେତେବେଳେ ଭକ୍ତ ମାନଙ୍କ ଘରୁ ଆସିବା ଖାଦ୍ୟ ମଧ୍ୟ ନଅଣ୍ଟ ହେଲା, ବସବାଣ୍ଣା ମାତ୍ତ୍ୱବାଲେୟାଙ୍କ ଉପଦେଶ ମାଗିଲେ । ମାତ୍ତ୍ୱବାଲେୟା କହିଲେ ନିଜକୁ ମୂଲ୍ୟ ଭୋଜ୍ୟକର । ଅନନ୍ତ ପ୍ରେମରେ ହିଁ ଭଗବାନଙ୍କର ଅନନ୍ତ କ୍ଷୁଧା ଦୂର ହେବ । ଅହଂକାର ହେରୁ ଭଗବାନଙ୍କର ପର୍ବତ ପ୍ରମାଣ ଖାଦ୍ୟରେ ସନ୍ତୋଷ ନାହିଁ । ପ୍ରେମରେ କଣିକାଏ ଖାଦ୍ୟ ସନ୍ତୋଷ ଆଣିଦେବ । ଭକ୍ତ ଜଙ୍ଗମଠାରେ ଆପଣାକୁ ସମର୍ପଣ କରେ । ଜଙ୍ଗମ ଭକ୍ତ ଉପରେ ବଞ୍ଚେ, ଏକ ବିନା ଅନ୍ୟ ଅପୂର୍ଣ୍ଣ । ଏହି ବିଷୟରେ ବିଭିନ୍ନ ବଚନକାର ଅସଂଖ୍ୟ ବଚନ ଲେଖିଛନ୍ତି ।

ପ୍ରଭୁଦେବଙ୍କ ଭବିଷ୍ୟତ ଦୃଷ୍ଟି ଉଜ୍ଜ୍ୱଳଥିଲା, ସେ ଜାଣିଥିଲେ ଯେ ବସବଙ୍କର ଲକ୍ଷ୍ୟ ଶିବ ଭକ୍ତି ଶିବ ଧ୍ୟାନ ଶିବାଗ୍ନିରର ବୀଜ ମଣିଷ ହୃଦୟରେ କ୍ଷେପଣ କରିବା ଓ ଜୀବ ପରମ ମଧ୍ୟରେ ସୋପାନ ନିର୍ମାଣକରି ସମ୍ବନ୍ଧ ସ୍ଥାପନ କରିବା । ସେ ଲକ୍ଷ୍ୟ ପୂର୍ତ୍ତି ଓ ଶରଣ ମାନଙ୍କର ଆସନ୍ନ ଅବସାନ ପ୍ରଭୁଦେବ ସ୍ପଷ୍ଟ ଦେଖିଥିଲେ । ଶରଣ ବିଷୟ ବନ୍ଧନରୁ ମୁକ୍ତ ନୁହେଁ, ବିଷୟ ମୁକ୍ତ ନୁହେଁ, ଥରେ ବନ୍ଧନ କଟେଇ ପାରିଲେ ବିଷୟ ଆପଣାଛାଏଁ ଯିବ । ଅଙ୍ଗ ଲିଙ୍ଗମୟ ହେବ । ବ୍ରହ୍ମାନୁଭବ କରିଥିବା ଶରଣ ପାଣି ଓ ପଡ଼ିଥିବା କୁଆପଟର ପରି । ଆଲୁଅରେ ମିଶିଥିବା ଆଲୁଅ ପରି । ପବନରେ ମିଶିଥିବା ପରିମଳପରି । ଅନୁଭୂତିର ଚୂଡ଼ାନ୍ତ ନିଃଶବ୍ଦତା । କେବଳ କଥାନୁହେଁ, ଚିନ୍ତା, ଅନୁଭବ ଓ ସକଳ କର୍ମରୁ ନିର୍ବେଦ ଅପସରଣ ।

ବସବ ହେଉଛନ୍ତି ପୂର୍ବାଚାର୍ଯ୍ୟ । ଆଲ୍ଲମ ଆଚାର୍ଯ୍ୟଙ୍କର ଆଚାର୍ଯ୍ୟ । ବୀର ଶୈବ ପରମ୍ପରା ଅନୁସାରେ ସେ ଶ୍ରୀ ଶୈଳଠାରେ ଅହଂକାରୀ ଗୋରକ୍ଷନାଥଙ୍କୁ ପରାଜିତକରି ଶରଣ ମାର୍ଗୀ କରାଇଥିଲେ । ତାଙ୍କର ଅନେକ ବଚନର ଭଣିତା ଗୋରକ୍ଷ ପାଳକ ମହାପ୍ରଭୁ ସିଦ୍ଧ ସୋମନାଥ ଲିଙ୍ଗ ।

—୦—

# ମହାଦେବୀ ଆକ୍କା

ବସବାଣ୍ଣାଙ୍କୁ ଯଦି ଜନ୍ମଜ୍ଞାନୀ ଓ ଜନ୍ମଭକ୍ତ କୁହାଯିବ, ତେବେ ମହାଦେବୀ ଆକ୍କାଙ୍କୁ ଜନ୍ମପ୍ରେମୀ କହିବା ସାର୍ଥକ । ଈଶ୍ୱର ଅନୁଭବ ପାଇଁ ଜ୍ଞାନ ଓ ଯୋଗ ମାର୍ଗକୁ ଅସ୍ୱୀକାର କରିଥିଲେ ମଧ୍ୟ ମହାଦେବୀ ଆକ୍କା ଈଶ୍ୱର ପ୍ରେମରେ କେବଳ ମଜ୍ଜି ଯାଇ ନଥିଲେ, ଚନ୍ନ ମଲ୍ଲିକାର୍ଜୁନଙ୍କ ସାଙ୍ଗରେ ଚିରନ୍ତନ ବିବାହ ସୂତ୍ରରେ ସେ ଆପଣାକୁ ବାନ୍ଧିଥିଲେ ।

ମହାଦେବୀ କର୍ଣ୍ଣାଟକ ପ୍ରଦେଶର ଉଡ଼ୁତଡ଼ି ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ଏହି ଗ୍ରାମର ମାତ୍ର ୩୬ ମାଇଲ ଦୂରରେ ସିମୋଗା ରାଜା କୌଶିକଙ୍କର ରାଜଧାନୀ । ସାଧାରଣ ଘରର ଝିଅ ହେଲେ ମଧ୍ୟ ସୁନ୍ଦର ପଣର ଜଗତଜଣା ମହାଦେବୀଙ୍କୁ ଜୀବନୀକାର ମାନେ "ରୁଦ୍ରକନ୍ୟକା" କହିଛନ୍ତି । ପିଲାଦିନୁ ଶିବ ଭକ୍ତି ଓ ସଂସାର ବୈରାଗ୍ୟ ପ୍ରକାଶ କରିବା ହେତୁ ତାଙ୍କର ଏପରି ନାମ କରଣ ସମ୍ଭବ । ଏପରି ଏକ କନ୍ୟାର ଦୀକ୍ଷା ଯେ ତାଙ୍କୁ ଈଶ୍ୱରମୁଖୀ କରାଇ ସଂସାର ସୁଖପ୍ରତି ବୀତରାଗ କରାଇବ ଏହା ସ୍ୱାଭାବିକ । ଏପରି ଏକ ସୁନ୍ଦରୀ, ଷୋଡ଼ଶୀ, ଅବିବାହିତା କନ୍ୟାକୁ ଦେଖି ରାଜା କୌଶିକ ଯେ ଆକୃଷ୍ଟହେବେ ଏଥିରେ ବା' ଆଶ୍ଚର୍ଯ୍ୟ କ'ଣ ? ଜୈନ ରାଜା ଓ ଶିବଶରଣ ଶିବଗତପ୍ରାଣା କନ୍ୟାର ବିଭା ସେ କାଳେ ଏକ ପ୍ରକାର ଅସମ୍ଭବ । ରାଜାଙ୍କ ବିବାହ ପ୍ରସ୍ତାବ ଫେରାଇ ଦେଲା ପରେ ମହାଦେବୀଙ୍କ ଆଗରେ ସମସ୍ୟା ହୁଏତ ଜୈନ ରାଜାଙ୍କ ସହ ବିବାହ, ନୋହିଲେ ରାଜାଙ୍କ ହାତରେ ପିତା, ମାତାଙ୍କ ଲାଂଛନା, ଏପରିକ ପ୍ରାଣ ହାନିର ମଧ୍ୟ ଭୟ । ମହାଦେବୀ ଗୋଟିଏ ସର୍ତ୍ତରେ ବିବାହ କରିବାକୁ ରାଜିହେଲେ । ରାଜ ସଭାରେ ମହାଦେବୀ ରାଜାଙ୍କୁ କହିଲେ, ଜୈନ ଧର୍ମ ତ୍ୟାଗକରି ଶୈବ ଧର୍ମ ଗ୍ରହଣ କର । ଚକିତ ରାଜା ଏ ସର୍ତ୍ତରେ ଅସମ୍ମତ ହେଲେ । ମହାଦେବୀ କେବଳ ରାଜାଙ୍କୁ ନୁହେଁ, ସଂସାର ପରିତ୍ୟାଗ କଲେ, ସେ ଆପଣାର ବସ୍ତ୍ର ସୁଦ୍ଧା ତ୍ୟାଗକରି ସଂପୂର୍ଣ୍ଣ ଉଲଗ୍ନ ହୋଇ ରାଜସଭା ତ୍ୟାଗକଲେ । ସମସ୍ତ ପରିହାସ ଓ ସମାଲୋଚନାର ଉତ୍ତରରେ ସେ କହିଥିଲେ—

"ଲିଙ୍ଗ ଆନନ୍ଦରେ ମୁଁ ଶରୀର ଜିଣିଲି ।
ଜ୍ଞାନ ଆନନ୍ଦରେ ମୁଁ ମନକୁ ଜିଣିଲି ।
ଈଶ୍ୱର ଅନୁଭବରେ ମୁଁ ଆତ୍ମାକୁ ଜିଣିଲି ।
ଆଲୋକ ଢୋପାକରେ ମୁଁ ଇନ୍ଦ୍ରିୟ ଅନ୍ଧାର ଜିଣିଲି ।

ମୁଁ ଚିତାଳ ପାଉଁଶକୁ ଦେଇ ।
କାମ ଦହନ ପରେ
କଏ ଯୌବନର ବାହ୍ୟ ରୂପରେ ଆପଣାକୁ ପ୍ରକାଶ କରୁଛ ?
କନ୍ଦର୍ପ ହତ୍ୟାପରେ ଯଦି ଚନ୍ନ ମଲ୍ଲିକାର୍ଜୁନ ତାଙ୍କୁ
ମନସିଜ ରୂପେ ବଞ୍ଚିବାକୁ ଦିଅନ୍ତି
ତେବେ ମୁଁ ସେହି ମନସିଜ କପାଳ ଲିଖନକୁ ପୋଛି ଦେଇଛି ।"

ତେବେ ବି ଯେଉଁମାନେ ବାହ୍ୟ ସୌନ୍ଦର୍ଯ୍ୟରେ ଆକୃଷ୍ଟ ହୋଇ ଆସୁଥିଲେ ସେମାନଙ୍କ ଉଦ୍ଦେଶ୍ୟରେ ମହାଦେବୀ କହୁଛନ୍ତି—

"କାୟାରେ ଅକାୟର ବାସ ।
ଜୀବ ନିର୍ଜୀବ ସହବାସ ॥

ଭବର ନିର୍ଭାବରେ ରଢ଼ ।
ଏ ମନେ ଘନ ହୋଇ ମୂଢ଼ ॥

ଏ ନାରୀ ମଥାସ୍ତନ ଦେଖି ।
ଆସ ଯେ ବନ୍ଧୁ ପଣ ରଖି ॥

ଦେବ ଚନ୍ନ ମଲ୍ଲିକାର୍ଜୁନ ।
ଧର୍ମବଳେ ମୁଁ ବଳୀୟାନ ॥"

ମହାଦେବୀ ଆକ୍କା ପ୍ରଭୁ ଦେବଙ୍କ ନିର୍ଦ୍ଦେଶକ୍ରମେ ଆପଣା ଘରଠାରୁ ପ୍ରାୟ ୨୦୦ ମାଇଲ ଦୂରରେଥିବା ଶ୍ରୀ ଶୈଳ ପର୍ଯ୍ୟନ୍ତ ପଦ ଯାତ୍ରାକରି ସେଠାରେ ଜ୍ୟୋତିର୍ଲିଙ୍ଗଙ୍କ ସହ ମିଳିତ ହୋଇ ଦେହ ତ୍ୟାଗ କରିଥିଲେ । ସେ ପ୍ରାୟ ୩୬୦ଟି ବଚନ ରଚନା କରିଛନ୍ତି । ଏହାବ୍ୟତୀତ ଯୋଗାଙ୍ଗ ତ୍ରିବିଧ, ସୃଷ୍ଟିବଚନ, ପଦଗଳୁ, ଅକ୍କଗଳ ପିଠିଲେ ତାଙ୍କର ପ୍ରମୁଖ ରଚନା ।

ଶ୍ରୀ ଶୈଳଯାତ୍ରା ପୂର୍ବରୁ ମହାଦେବୀ ବୀର ଶୈବପୀଠ କଲ୍ୟାଣ ଯାଇ ବସବ ଓ ଆଲ୍ଲମଙ୍କ ସହ ଶାସ୍ତ୍ର ଆଲୋଚନା କରିଥିଲେ । ମହାଦେବୀଙ୍କର ସମସ୍ତ ପାର୍ଥିବ ଜଞ୍ଜାଳ ତ୍ୟାଗ ଦ୍ୱାରା ବସବ ସମ୍ପୂର୍ଣ୍ଣ ଅଭିଭୂତ ହୋଇଥିଲେ ! ଗୋଟିଏ ବଚନରେ ସେ କହନ୍ତି,—

"ଅରୂପକୁ ପ୍ରେମ କରିବା ଲୋକର ଦେହ ପ୍ରୟୋଜନ କ'ଣ ?
ଅମନକୁ ପ୍ରେମ କରିବା ଲୋକର ଲଜ୍ଜା ପ୍ରୟୋଜନ କ'ଣ ?

ଦିଗମ୍ବର ପ୍ରେମକରିବା ଲୋକର ଅଣ୍ଡାସୂତା ହେବ କ'ଣ ?
ହେ କୂଡ଼ଲ ସଙ୍ଗମ ଦେବ
ମହାଦେବୀଙ୍କ ପରି ଭକ୍ତର ଜଞ୍ଜାଳ ପ୍ରୟୋଜନ କ'ଣ ?
ପ୍ରଭୁ ଏହା ମନେ ରଖ ।"

ସତେ ଯେପରି ଅରୂପ, ରୂପ, ଅମନ, ମନ, ଅବୟବ, ନିରବୟବ ଭେଦରେ ବାନ୍ଧି ହୋଇଯାଉଥିବା ଲୋକପ୍ରତି ଲକ୍ଷ୍ୟ ରଖି ମହାଦେବୀ କହୁଛନ୍ତି—

"ବସିଲା ଆଉ ଉଠିଲା ଘିଅରେ
କି ଭେଦ ଅଛି ହେ ସାଧୁ ?
ଦୀପ ଆଉ ଦୀପ୍ତି ଭେଦ କେଉଁଠି ହେ ସାଧୁ ?
ଅଙ୍ଗ ଆଉ ଆତ୍ମା ଭିନ୍ନ କିପରି ହେ ସାଧୁ ?
ଶ୍ରୀଗୁରୁ ମନ୍ତ୍ରରେ ଅଙ୍ଗ ମନ୍ତ୍ରାସ୍ଥିତ
ଅବୟବ, ନିରବୟବ ଭେଦ କି ସାଧୁ ?
ଚନ୍ନ ମଲ୍ଲିକାର୍ଜୁନ ଉପରେ ମନ ଭୋଳା
ମତେ ଏ ସବୁ କହି ବୁଝାଇବାରେ କି ଲାଭ ?"

ପ୍ରଭୁଦେବ ମହାଦେବୀଙ୍କୁ ପଚାରିଥିଲେ ମରିଥିବା ଲୋକ 'ମୁଁ ମରିଛି' କହିବ କିପରି ? ଈଶ୍ୱର ଲୀନ ଲୋକର 'ମୁଁ କାର' ଆସିଲା କେଉଁଠୁ ? ଭାଷା ପାର୍ଥକ୍ୟ ଓ ବାକ୍ସଂଯମର ଦ୍ୟୋତକ ନୁହେଁ କି ମହାଦେବୀଙ୍କର ଉତ୍ତର, ଶୋଇଥିବା ଲୋକ ବାହାରକୁ ମଡ଼ା । କିନ୍ତୁ ସେ ଉଠିଲେ ସ୍ୱପ୍ନର ସବିସ୍ତାର ବର୍ଣ୍ଣନା ଦେଇପାରେ । ସମରସ ମନୋମନ ସମ୍ପୃକ୍ତ ଅଭିଜ୍ଞତାକୁ ବାହାର ଭିତର, ପାଖ ଦୂର, ଭେଦାଭେଦଜ୍ଞାନର ଊର୍ଦ୍ଧ୍ୱରେ ଈଶ୍ୱର ପ୍ରେମରେ ନିମଜ୍ଜିତ କରିପାରେ । ଜୀବାତ୍ମା ଓ ପରମାତ୍ମାର ମିଳନରେ ସମସ୍ତ ବିରୋଧର ନିରସନ ।

ଅନେକ ମହାଦେବୀଙ୍କୁ ମୀରାଙ୍କ ସହ ତୁଳନା କରିଥାନ୍ତି । ଉଭୟେ ଆପଣା ଆପଣା ମାର୍ଗରେ ଅନନ୍ୟା ।

—০—

# ବସବାଣ୍ଣା

ମହନ୍ତମାନଙ୍କର ଜୀବନୀ ପର୍ଯ୍ୟାଲୋଚନାକଲେ ଦେଖାଯିବ ଯେ ତହିଁରେ ସତ ଯେତିକ କଳ୍ପନା ପ୍ରବଣତା ସେତିକ । ପୁଣି ଯେଉଁ ସନ୍ଥ ଯେତେବଡ଼ ତାଙ୍କ ଜୀବନୀରେ କଳ୍ପନା ପ୍ରବଣ ଭକ୍ତିକ ମିଥ୍ୟାର ଅଂଶ ସେତେ ବେଶୀ । ବସବଙ୍କର ନିଜ ବଚନ, ତାଙ୍କ ସମସାମୟିକମାନଙ୍କର ବଚନ, ଜୀବନୀ ସାହିତ୍ୟ, ଜୈନ ପୁରାଣ ଓ ଶିଳାଲେଖ ଆଦି ସୂତ୍ରରୁ ତାଙ୍କ ଜୀବନୀ ସମ୍ବନ୍ଧରେ ବହୁ ପ୍ରାମାଣିକ ତଥ୍ୟ ମିଳୁଥିଲେ ସୁଦ୍ଧା, ତାଙ୍କ ଜୀବନୀକାରମାନେ ଯେ ସତ ସାଙ୍ଗରେ ଭକ୍ତିଳ ମିଥ୍ୟାର ଗୁଣ୍ଠ ମାଡିଗଲେବେ ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।

ବସବ ୧୧୩୧ -୩୨ରେ ବିଜାପୁରର ବାଗେଓ୍ୟାଡ଼ି ଗାଁରେ ମାଦରସ ଓ ମାଦଲମ୍ବିକେଙ୍କ କୋଳରେ ଜନ୍ମିଥିଲେ । ମାଦରସ ବାଗେଓ୍ୟାଡ଼ି ଗାଁର ମୁଖ୍ୟ, ରାଜା ବା ଅରସ । ମାଦମ୍ବେ ଅତି ଧାର୍ମିକା । ବ୍ରତ ଉପାସରେ ତାଙ୍କର ସମୟ କଟୁଥିଲା । ବସବ ପିଲାଦିନୁ ଶିବଭକ୍ତ ହେଲେ ହେଁ ବାହ୍ୟ ଆଚାରର ବିରୋଧୀ । ମଧ୍ୟ ତାଙ୍କର ବ୍ରତ ହୋଇଥିଲା କି ନାହିଁ ଏ ବିଷୟରେ ମତଭେଦ ଅଛି, କିନ୍ତୁ ସେ ଯେ ବ୍ରତ ବିରୁଦ୍ଧରେ' ତନ୍ତ୍ର ମନ୍ତ୍ର ଦେଖାଇ ବାପାଙ୍କ ପାଖରେ ପ୍ରତିବାଦ କରିଥିଲେ, ଏ ବିଷୟରେ ସମସ୍ତେ ଏକମତ । ସେ ଘରଛାଡ଼ି କୁଡ଼ଲସଙ୍ଗମ ବା କପ୍ପଡ଼ିସଙ୍ଗମ ନାମକ ସ୍ଥାନକୁ ଯାଇଥିଲେ । କୃଷ୍ଣା ଓ ମଳପ୍ରଭାର ସଙ୍ଗମରେ ଥିବା ଏହି ସ୍ଥାନ ସେ କାଳର ଏକ ପ୍ରସିଦ୍ଧ ତୀର୍ଥ । ସେଠି ଈଶାନ୍ୟଗୁରୁଙ୍କ ପାଖରେ ବେଦ, ଧର୍ମଶାସ୍ତ୍ର ଆଦି ପଢ଼ିଲାପରେ ଜ୍ଞାନ ଓ ଆଚାର ମାର୍ଗପ୍ରତି ତାଙ୍କ ବିତୃଷ୍ଣା ବଢ଼ିଲା ସିନା କମିଲା ନାହିଁ । କଥିତ ଅଛି, କୁଡ଼ଳସଙ୍ଗମଦେବ ବସବଙ୍କୁ ମଙ୍ଗଲଓ୍ୟାଡ଼ ଯିବାକୁ କହିଲେ । ସେ କୁଡ଼ଲ ସଂଗମକୁ ଛାଡ଼ିବାକୁ ରାଜି ନହେବାରୁ କୁଡ଼ଲ ସଂଗମ ସଦାସର୍ବଦା ତାଙ୍କ ପାଖରେ ରହିବାକୁ ରାଜି ହେଲେ । ନନ୍ଦିକେଶ୍ୱରଙ୍କ ଜରିଆରେ ସଙ୍ଗମନାଥ ନିଜେ ଇଷ୍ଟଲିଂଗ ରୂପେ ବସବଙ୍କ ପାଖକୁ ଆସିଲେ । ବୀର ଶୈବମାନେ ଏହାକୁ ଲିଂଗ ଦୀକ୍ଷାବୋଲି କହନ୍ତି । ଏହି ଦୀକ୍ଷାର ସ୍ଥାନ ଓ ସମୟ ବିଷୟରେ ମତଭେଦ ଅଛି ।

ବସବଙ୍କର ବିବାହ, ସ୍ତ୍ରୀଙ୍କ ନାଁ ଓ ସ୍ତ୍ରୀଙ୍କ ପରିବାର ବିଷୟରେ ମତଭେଦ ଅଛି । ମଂଗଲଓ୍ୟାଡ଼ାର ରାଜା ବିଜ୍ଜଲଙ୍କ 'ଭଣ୍ଡାରୀ' (ଭଣ୍ଡାର ରକ୍ଷକ) ରୂପେ କାମ କରୁଥିବାବେଳେ ତାଙ୍କ ବିବାହ ସଂପନ୍ନ ହୋଇଥିବାରେ ସମସ୍ତେ ଏକମତ । କାହାର କାହାର ମତରେ ରାଜା ବିଜ୍ଜଲଙ୍କ ନିମନ୍ତ୍ରଣରେ ବସବ ତାଙ୍କର ମନ୍ତ୍ରୀପଦ

ସ୍ୱୀକାର କରିଥିଲେ । କଥିତ ଅଛି ଯେ କୌଣସି ଏକ ପ୍ରାଚୀନ ଲେଖାର ପାଠୋଦ୍ଧାର କରି ବସବ ବିଜ୍ଜଳଙ୍କ ସିଂହାସନ ତଳୁ ଅସଂଖ୍ୟ ସଂପତ୍ତି ଉଦ୍ଧାର କରିଥିଲେ । ଏହି ଘଟଣାରୁ ସେ ରାଜା ବିଜ୍ଜଳଙ୍କର ଏକାନ୍ତ ବିଶ୍ୱାସୀ ସଖାରୂପେ କାର୍ଯ୍ୟ କରିଥିଲେ ।

ବସବ ସମାଜ ସୁଧାର ବିଗନରେ ଆପଣାକୁ ଉତ୍ସର୍ଗ କରିଥିଲେ । ସେ ଉଚ୍ଚ-ଜାତି, ନୀଚ-ଜାତି, ଧନୀ, ଗରିବ, ପୁରୁଷ-ସ୍ତ୍ରୀ, ସମସ୍ତଙ୍କୁ ସମ ଦୃଷ୍ଟିରେ ଦେଖୁଥିଲେ । ସମ୍ପତ୍ତି ତାଙ୍କ ପକ୍ଷରେ ତୁଚ୍ଛ ଥିଲା । କାମ ତାଙ୍କ ବିଚାରରେ ଉପାସନା । କଲ୍ୟାଣରେ ସେ ଶାସ୍ତ୍ରାର୍ଥ ପାଇଁ ଯେଉଁ ଅନୁଭବ ମଣ୍ଡପ ପ୍ରତିଷ୍ଠା କରିଥିଲେ ସେଠାକୁ ମହାରାଷ୍ଟ୍ରରୁ ଡଗଲଙ୍ଗ ଦେବ, ଓଡ଼ିଶାରୁ ନାନ୍ନୟ୍ୟା, କାଶ୍ମୀରୁ ଶିବଲେଙ୍କ ମଞ୍ଚାଣ୍ଣା ଏବଂ କାଶ୍ମୀରରୁ ମୋଲିଗେୟ ମାରେୟା ଆସିଥିଲେ । ମଣ୍ଡପକୁ ମହାଦେବୀ ଆକ୍କା ଆସି ମଧ୍ୟ ବିଚାର ବିମର୍ଶରେ ଭାଗ ନେଇଥିଲେ । ବିଭିନ୍ନ ଅଞ୍ଚଳରୁ ବହୁ ସିଦ୍ଧସାଧକ ଆସୁଥିଲେ । ନୂଆ ବିଚାରକୁ ସମସ୍ତେ ଗ୍ରହଣ କରୁଥିଲେ ମଧ୍ୟ ଯେତେବେଳେ ସେଇ ବିଚାର ସମାଜରେ ଚଳେଇବାକୁ ଚେଷ୍ଟା ହେଲା, ଗୁରୁଆଡ଼େ ଚହଳ ପଡ଼ିଲା । ବ୍ରାହ୍ମଣୀୟ ମଧୁବରଷ ଓ ମୋଚିପୁଅ ହରଲୟ୍ୟାଙ୍କ ବାହାଘର ହେଲାପରେ ରାଜା ବିଜ୍ଜଳଙ୍କ ଆଦେଶରେ ସେମାନଙ୍କୁ ଫାଶୀ ଦିଆଗଲା ବସବଙ୍କ ମତବାଦୀଙ୍କ ମଧ୍ୟରେ ଘୋର ବିକ୍ଷୋଭ ପ୍ରକାଶ ପାଇଲା । ବସବ ପ୍ରକୃତରେ ଦାୟୀ ହୁଅନ୍ତୁ ବା ନହୁଅନ୍ତୁ କହୁଛନ୍ତିପରେ ବିଷ ପ୍ରୟୋଗରେ ରାଜା ବିଜ୍ଜଳଙ୍କ ମୃତ୍ୟୁ ଘଟିବାରେ କିଛି ପରିମାଣରେ ଏହି କ୍ରୋଧର କାରଣ ହେଲା । ଗବେଷଣାରୁ ଜଣାଯାଏ ଯେ ବିଜ୍ଜଳଙ୍କ ମୃତ୍ୟୁ ବେଳକୁ ବସବ କଲ୍ୟାଣ ଛାଡ଼ି ସାରିଥିଲେ । ୧୧୬୭ରେ କୂଡ଼ଲ ସଙ୍ଗମରେ ତାଙ୍କର ଶିବପ୍ରାପ୍ତି ହେଲା ।

ବସବ ଆପଣା ପୁତୁରା ଚନ୍ନ ବସବାଣ୍ଣାଙ୍କୁ ଇଷ୍ଟଲିଙ୍ଗ ଦୀକ୍ଷା ଦେଇଥିଲେ । ଚନ୍ନ ବସବାଣ୍ଣା ବହୁ ବଚନରେ ବସବଙ୍କର ସିଦ୍ଧି, ପ୍ରାଣ ଓ ଲିଙ୍ଗ ମଧ୍ୟରେ ସମ୍ବନ୍ଧ, ଶିବ ଭକ୍ତ ମାହାତ୍ମ୍ୟ, ଜଙ୍ଗମ ଓ ଲିଙ୍ଗର ଏକାତ୍ମତା ଆଦି ବିଷୟରେ ସୁନ୍ଦର ପ୍ରବଚନ କରିଛନ୍ତି । ସ୍ତ୍ରୀ ନିଲାମ୍ମା ୧୬ଟି ବଚନ ଲେଖି ବସବଙ୍କ ପ୍ରତି ତାଙ୍କର ଏକାନ୍ତ ଅନୁଗତ୍ୟ ପ୍ରକାଶ କରିଛନ୍ତି । ବସବଙ୍କ ମୃତ୍ୟୁରେ ସେ ଯେଉଁ ବଚନ ଲେଖିଛନ୍ତି ତାହା ପ୍ରାଣ ସ୍ପର୍ଶୀ ।

"ମୋର ପ୍ରଭୁ ତାଦାତ୍ମ୍ୟ ଲଭ କଲାପରେ
ମୋର ଆଉ କ'ଣ ଅଛି ?
ମୋର ଶରୀର ନାହିଁ, ପ୍ରାଣ ନାହିଁ ।
ହୃଦୟର ଦାୟିତ୍ୱ ଶେଷ ହେଲାପରେ
ମୁଁ କେବଳ ଆନନ୍ଦ ପଥର ଯାତ୍ରୀ
ହେ ସଙ୍ଗୟା ।

ହେ ପ୍ରଭୁ, ମୋ ପାଦୁକାର କଷ୍ଟକଙ୍କ ଉଭେଇ ଯାଇଛି ।
ପାଦୁକାର କଷ୍ଟକଙ୍କ, ମନର ଇଷ୍ଟଲିଂଗ ହୋଇଛି ।
ବସବ ତାଙ୍କର ଅନ୍ତର୍ଦ୍ଧାନ ପଥର ଅପର ପାରକୁ ଗଲେ ।
ମୁଁ ତୁମ ସାରୂପ୍ୟ ଲାଭ କରୁଛି ହେ ପ୍ରଭୁ ।''

ବସବ ଲିଙ୍ଗଙ୍କ ସାମରସ୍ୟ ଲାଭ କରିଥିଲେ । ପ୍ରଭୁଦେବ ବସବଙ୍କୁ ମଙ୍ଗଳସ୍ୱରୂପ ଗୁରୁ ରୂପେ ଚିହ୍ନିଥିଲେ ଓ ତାଙ୍କ ମଧ୍ୟରେ ଆପଣା ଗୁରୁ ପରମେଶ୍ୱର ଦର୍ଶନ କରିଥିଲେ । ବସବଙ୍କୁ ଦେଖି ପ୍ରଭୁଦେବ କହିଥିଲେ—

''ହେ ଗୁହେଶ୍ୱର
ତୁମକୁ ଓ ମତେ ଯେ ଦେଖିଛନ୍ତି
ମୁଁ ତାଙ୍କୁ ଆଜି ଦେଖିଲି ।''

ଗୁରୁ, ଲିଙ୍ଗ, ଜଂଗମ ଓ ପ୍ରସାଦ ଯେ ଏକ ତତ୍ତ୍ୱର ପ୍ରକାଶ, ଏକଥା ବସବ ପ୍ରାଞ୍ଜଳ ଭାବରେ ପ୍ରଭୁଦେବଙ୍କୁ କହିଥିଲେ । ପ୍ରଭୁଦେବ ବସବଙ୍କ ପ୍ରଶସ୍ତିରେ ଯେଉଁ ବଚନମାନ ଲେଖିଛନ୍ତି ତାହା କେବଳ ବସବ ଚରିତ୍ରର ମହିମା ପ୍ରକାଶ ନୁହେଁ, ବୀରଶୈବ ମତର ଦାର୍ଶନିକ ବିଶ୍ଳେଷଣ ମଧ୍ୟ । ସାହିତ୍ୟ ଦୃଷ୍ଟିରୁ ଏଗୁଡ଼ିକ ଅମୂଲ୍ୟ । ତାଙ୍କ ବଚନର ଭାବଗର୍ଭିକ ସରଳତା ନିମ୍ନ ବଚନରୁ ଦେଖାଯାଇ ପାରେ ।

''ଯଦି କହ ଶିବ ଜ୍ଞାନ ଓ ଅଜ୍ଞାନ
ଶିବଜ୍ଞାନୀ ଏହା ମାନିବେ କି ?
ଯଦି କହ ତୁମେ ଉଭୟ ଶିବ ଓ ଶକ୍ତି
ମହାନୁଭବୀ ସନ୍ଥ ସୁଖୀ ହେବେକି ?
ଯଦି ନିଜକୁ ନଜାଣି ତୁମେ କହ ବ୍ରହ୍ମ ଅନ୍ୟସବୁ
ତେବେ ଗୁହେଶ୍ୱର ତୁମ କର୍ମ-ଚିହ୍ନିତ ବାକ୍ୟ ମାନିବେକି ?''

ବସବ ଜ୍ଞାନ ଯୋଗୀ, କର୍ମଯୋଗୀ ଓ ଶିବ ଭକ୍ତର ଚୂଡ଼ାନ୍ତ । ପ୍ରଭୁଦେବଙ୍କ ପ୍ରଶ୍ନ ''ଦେହ ବନ୍ଧନରେ ଲିଙ୍ଗର ସ୍ଥିତି, ଲିଂଗ ବନ୍ଧନରେ ଦେହର ସ୍ଥିତି । ଜ୍ଞାନବନ୍ଧନରେ ଶବ୍ଦର ସ୍ଥିତି । ଶବ୍ଦ ବନ୍ଧନରେ ଜ୍ଞାନର ସ୍ଥିତି । ତେବେ ତୁମଠାରେ କିପରି ଲିଂଗ ଓ ଅଂଗର ଅଦ୍ୱୈତ ସିଦ୍ଧି ଘଟିଛି ?'' ଉତ୍ତରରେ ବସବ କହିଥିଲେ—

''ବଡ଼ରୁ ବଡ ହୋଇ ମୁଁ ଆହୁରି ବଡ଼ ଅନନ୍ତ ଅପାରସତ୍ତାରେ ସମ୍ମିଳିତ ।
ମୁଁ କୂଡ଼ଲ ସଂଗମ ଦେବଙ୍କ ଅନନ୍ତ ଆଲୋକରେ କିପରି ଆଲୋକ ହୋଇ ମିଶିଲି,
ମୋ ଶବ୍ଦ ମୁଗ୍ଧ ନିଃଶବ୍ଦରେ ବାନ୍ଧିହୋଇଯାଏ କିପରି କହିବି ?''

ଏହା ହିଁ ଚରମ ଅନୁଭୂତି, ପରମ ବିଭୂତି, ବସବଙ୍କର ଜ୍ଞାନ, ଭକ୍ତି, ଅନୁଭବ ଓ ଶ୍ରେଷ୍ଠତ୍ୱର ନିଦର୍ଶନ ।

# ଆୟଦକ୍କି ମାରୟା

ଆୟଦକ୍କି ମାରୟାଙ୍କର ଜନ୍ମସ୍ଥାନ, ପିତା ମାତା, ଶିକ୍ଷକ, ଦୀକ୍ଷା ଆଦି ସମ୍ବନ୍ଧରେ ଅତି ଅଳ୍ପ ତଥ୍ୟ ମିଳିଥିଲେ ମଧ୍ୟ ସେ ଯେ ବୀର ଶୈବ ଇତିହାସରେ ଅମର, ସନ୍ଦେହ ନାହିଁ । ପ୍ରାୟ ୫୦ ବର୍ଷ ବୟସରେ ସେ ବସବଙ୍କ ବଚନର ଦ୍ୱାରା ଆକୃଷ୍ଟ ହୋଇ କଲ୍ୟାଣ ଆସିଥିଲେ । ବସବଙ୍କ ଘର ଆଗରେ ପଡ଼ିଥିବା ଚାଉଳ-ଗୋଟେଇ ସେଇଆକୁ ସାଧୁ ଜଙ୍ଗମଙ୍କୁ ଅର୍ପଣ କଲା ପରେ ତାଙ୍କ ପ୍ରସାଦରେ ସେ ଓ ତାଙ୍କ ସ୍ତ୍ରୀ ବଞ୍ଚୁଥିଲେ । ନିରହଙ୍କାର ମାରୟା ଓ ତାଙ୍କ ସ୍ତ୍ରୀ ଲକ୍କାମ୍ମା କିପରି ଆପଣା ଭକ୍ତିରେ ସମସ୍ତ ଶରଣ ସମାଜକୁ ଖାଇବାକୁ ଦେଇ ସନ୍ତୁଷ୍ଟ କରିଥିଲେ ଏହା ଏବେ ବି କଥା ହୋଇ ରହିଛି ।

ତାଙ୍କ ବଚନରେ କାୟକର ସ୍ଥାନ ଉଚ୍ଚ । କାୟକର ଅର୍ଥ ଶ୍ରମ । ଏହାର ଫଳ ଈଶ୍ୱରଙ୍କର । ତାଙ୍କ ମତରେ ଭିକ ମାଗି ଈଶ୍ୱର ସନ୍ନିଧି ଲାଭ ଅସମ୍ଭବ । କାୟକରେ ଗୁରୁ, ଲିଙ୍ଗ ଜଙ୍ଗମ କାହାର ବାଧା ଦେବାର ଅଧିକାର ନାହିଁ । ଈଶ୍ୱର ନକେ ପଥର କଣ୍ଟାଳୀ ସାଙ୍ଗରେ ପଥର ନଟାଳି । ଭକ୍ତର କାୟକ ପ୍ରୟୋଜନ ଅତିରିକ୍ତ ଉପାର୍ଜନ କରିବା ଅନୁଚିତ । କାୟକ ସତ୍ୟ ଓ ଶୁଦ୍ଧି । ଦାସୋହ (ସେବା) କାୟକ ସହ ଘନିଷ୍ଠ ଭାବରେ ସଂପୃକ୍ତ । ଏହି ସେବାର ମହିମା ନିମ୍ନ ଶ୍ଳୋକରେ ବର୍ଣ୍ଣିତ ।

"ଶିବ ଯୋଗିନୀ ସଂତୃପ୍ତୋ ତୃପ୍ତୋ ଭବତି ଶଙ୍କରଃ
ତତ୍ ତୃପ୍ତ୍ୟା ତନ୍ମୟମ୍ ବିଶ୍ୱମ୍ ତୃପ୍ତି ମେତି ଚରା ଚରମ୍"

କିନ୍ତୁ କାୟକ ମଗ୍ନ ବ୍ୟକ୍ତି କିପରି ବାହ୍ୟ ଓ ଅଭ୍ୟନ୍ତର କର୍ମ ବନ୍ଧନରୁ ମୁକ୍ତି ପାଇବ ? ମୁଁ କାର ଓ କର୍ତ୍ତବ୍ୟବୋଧ ଦୂର ନୋହିଲେ କାୟକରେ ଉଚ୍ଚତର ସିଦ୍ଧି ଅସମ୍ଭବ । ଜ୍ଞାନ, ଭକ୍ତି ଓ କର୍ମ ଏକତ୍ର ନୋହିଲେ ଅମନସ୍କ ଯୋଗ ଓ କର୍ମ ଯୋଗର ଅଦ୍ୱୈତ ସିଦ୍ଧି ସମ୍ଭବ ନୁହେ ।

ମାରୟା ଓ ଲକ୍କାମ୍ମା ଏକ ପ୍ରାଣର ଦୁଇ ଦେହ । ବୀର ଶୈବ ବଚନ ସାହିତ୍ୟରେ ସେମାନଙ୍କର ଦାନ ଚିର ଉଜ୍ଜ୍ୱଳ ରହିବ ।

—o—

# ଉତ୍ଲିଙ୍ଗ ପେଦ୍ଦି

ଟଗ୍ୱର, ପେଦାଣ୍ଣାଙ୍କର ପେଶା ଥିଲା । ଥରେ ସେ ଆପଣା ଧନ୍ଦାରେ ଉତ୍ଲିଂଗ ଦେବଙ୍କ ମଠକୁ ଯାଇଥିଲେ । ସେତେବେଳେ ଉତ୍ଲିଂଗଦେବ କୌଣସି ଏକ ଶିଷ୍ୟଙ୍କୁ ଦୀକ୍ଷା ଦେଉଥିଲେ । ଝରକାରେ ଏହି ଦୀକ୍ଷା ଦେଖି ପେଦାଣ୍ଣାଙ୍କର ହୃଦୟ ପରିବର୍ତ୍ତନ ହେଲା । ଉତ୍ଲିଂଗ ଦେବଙ୍କୁ ଦୀକ୍ଷା ଦେବାପାଇଁ କହିବାକୁ କିନ୍ତୁ ତାଙ୍କର ସାହସ ହେଲା ନାହିଁ । ସେ ମଠକୁ ଜାଳେଣି କାଠ ଯୋଗାଇବା ଆରମ୍ଭ କଲେ । ସେ ପଇସା ନ ନେବାରୁ ଦିନେ ଉତ୍ଲିଂଗ ଦେବ ବାକି ପଇସା ଦେବାକୁ ବାଧ୍ୟ କଲେ । ପେଦାଣ୍ଣା ତାଙ୍କୁ ଦୀକ୍ଷା ଦେବାକୁ ଅନୁରୋଧ କଲେ । ଉତ୍ଲିଂଗ ଦେବ ତାଙ୍କୁ ଉପେକ୍ଷା କରି ଚାଲିଗଲେ ।

ପେଦାଣ୍ଣା କାଠ ଯୋଗେଇବା ବନ୍ଦ କଲେ ନାହିଁ । ଦିନେ ତାଙ୍କର ଏକାନ୍ତ ଅନୁରୋଧରେ ବିରକ୍ତ ହୋଇ ଉତ୍ଲିଂଗ ଦେବ ତାଙ୍କ ଆଡ଼କୁ ଖଣ୍ଡେ ପଥର ଫୋପାଡ଼ିଦେଇ ଘରକୁ ଯିବାକୁ କହିଲେ । ପେଦାଣ୍ଣାଙ୍କ ଭକ୍ତି ସେହି ପଥର ଖଣ୍ଡକୁ ଜ୍ୟୋତି ଲିଂଗରେ ପରିଣତ କରିଥିବା କଥା ଲୋକ ମୁଖରେ ଅଛି । ଉତ୍ଲିଂଗ ଦେବ ସନ୍ତୁଷ୍ଟ ହୋଇ ତାଙ୍କୁ ଦୀକ୍ଷା ଦେଲେ । ଉତ୍ଲିଂଗ ଦେବଙ୍କ ମୃତ୍ୟୁପରେ ଉତ୍ଲିଂଗ ପେଦ୍ଦି ନାମ ନେଇ ପେଦାଣ୍ଣା ସେହି ପୀଠର ଅଧିକାରୀ ହେଲେ ।

ପେଦାଣ୍ଣା ୧୧୮୦ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିବା ଜଣାଯାଏ । ଏପର୍ଯ୍ୟନ୍ତ ତାଙ୍କର ୨୯୪ଟି ବଚନ ଲୋକ ଲୋଚନକୁ ଆସିଛି । ଉତ୍ଲିଂଗ ପେଦ୍ଦି ସଂସ୍କୃତ ବିଦ୍ୱାନ ଥିଲେ । ବୀରଶୈବ ଧର୍ମର ଶାସ୍ତ୍ରୀୟତା ପ୍ରମାଣ କରିବା ତାଙ୍କର ଅଭିପ୍ରାୟ ଜଣାଯାଏ ।



## ଚନ୍ନ ବସବାଣ୍ଣା

ଚନ୍ନ ବସବାଣ୍ଣା ବସବଙ୍କ ଧୂତୁର । ବସବ ହିଁ ତାଙ୍କୁ ଦୀକ୍ଷା ଦେଇଥିଲେ ବୋଲି ଜଣାଯାଏ । ଜଣେ ବିଶିଷ୍ଟ ଜ୍ଞାନୀରୂପେ ତାଙ୍କର ସ୍ୱୀକୃତି ଏବଂ ସମ୍ମାନ । ଗୋଟିଏ ବଚନରେ ସେ କହିଛନ୍ତି—

"ଜ୍ଞାନର ତୃପ୍ତି ପାଇଁ ଅନୁଭବ ଅନ୍ତଃସ୍ଥ
ଲିଙ୍ଗାନୁଭବରୁ ମୁଁ ତୁମକୁ ଦେଖିଲି
ତୁମକୁ ଦେଖି ମୁଁ ଆପଣାକୁ ଭୁଲିଗଲି
ପ୍ରଭୁ କୂଡ଼ଲ ଚନ୍ନ ସଙ୍ଗମଦେବ ।

ଚନ୍ନ ବସବାଣ୍ଣାଙ୍କର ୧୭୦୬ଟି ବଚନ ପ୍ରକାଶିତ ହୋଇଛି । ଏହା ବ୍ୟତୀତ ସେ ନ'ଟି ବହି ଲେଖିଥିବା ଜଣାଯାଏ ।

—o—

## ହଡ଼ପଦ ଅପ୍ପଣ୍ଣା

ହଡ଼ପଦ ଅପ୍ପଣ୍ଣା ଜାତିରେ ମୋଚି । ବସବଙ୍କର ତାମ୍ବୁଲ ସେବାରେ ସେ ଆପଣାକୁ ନିଯୁକ୍ତ କରିଥିଲେ । ଗୋଟିଏ ଝୋଳେଇରେ ପାନ ଓ ଅନ୍ୟାନ୍ୟ ସରଞ୍ଜାମ ଧରି ସେ ବସବଙ୍କର ଅନୁଗାମୀ ହେଉଥିଲେ ।

କୂଡ଼ଲ ସଙ୍ଗମକୁ ବସବଙ୍କର ଶେଷ ଯାତ୍ରାରେ ସେ ସହଚର ଥିଲେ । କିଛି ଦୂର ଗଲାପରେ ବସବ କଲ୍ୟାଣରେ ରହିଯାଇଥିବା ଆପଣା ସ୍ତ୍ରୀ ନୀଳାମ୍ବିକେଙ୍କୁ ଆଣିବାକୁ ହଡ଼ପଦଙ୍କୁ ପଠାଇଥିଲେ । ହଡ଼ପଦ ଏକା ଫେରି ଆସି କହିଲେ ଯେ ନୀଳାମ୍ବିକେ ସେକେବଳ ଆସିବାକୁ ଅସ୍ୱୀକାର କଲେ ନାହିଁ, କୂଡ଼ଲ ସଙ୍ଗମ ଓ ତାଙ୍କର ଇଷ୍ଟଲିଙ୍ଗ ଯେ ଏକ ଏ କଥା ସେ ପ୍ରତ୍ୟକ୍ଷ କରାଇଲେ । ଆଶ୍ଚର୍ଯ୍ୟହୋଇ ବସବ ଏହା ଉପରେ ସମ୍ମତ ପଡ଼ିଥିଲେ । କଥିତ ଅଛି ଯେ ହଡ଼ପଦ ଏହି ଅନୁଭବର ପୁନରାବୃତ୍ତି କରି ପଗେ ପଗେ ଆପଣା ଶରୀର ତ୍ୟାଗ କରି ଈଶ୍ୱରତ୍ୱ ଲାଭ କରିଥିଲେ ।

ହଡ଼ପଦଙ୍କର ଦୁଇ ଶହ କୋଡ଼ିଏଟି ବଚନ ଏପର୍ଯ୍ୟନ୍ତ ପ୍ରକାଶିତ ହୋଇଛି । ସେ ସଂସାର ବନ୍ଧନ ବିଷୟରେ ସଚେତନ ଥିଲେ । ସେ କହିଛନ୍ତି--

"ଜମିର ମାଟି ଦଅଣକର ବାଲୁଙ୍ଗା ଶୁଣିଲ ପର
ମୂର୍ଖ ଲୋକେ ବିଷୟ ସୁଖପାଇଁ ମିଛ କାହିଁ କଷ୍ଟ ପାଉଛନ୍ତି ।
ଏମାନେ କପରି ବଡ଼ ବଡ଼ ଗୁରୁଙ୍କ କଥା ବୁଝିବେ ?

ଯେଉଁମାନେ ମରଣ ବାଧାଗ୍ରସ୍ତ
ସେମାନେ ତୁମକୁ କପରି ଚହ୍ନିବେ
ବସବପ୍ରିୟ କୁଡ଼ଲ ଚନ୍ନ ବସବାଣ୍ଣୋ ?"

—o—

# ଅମ୍ବିଗର ଚୌଡ଼େୟା

ଅମ୍ବିଗର ଚୌଡ଼େୟା ନାଉରୀ ହେଲେ କ'ଣ ହେଲା, ଶିବଙ୍କ ସନ୍ନିଭ ଷପଣାର ଅଦ୍ୱୈତତ୍ୱ ସମ୍ବନ୍ଧରେ ସେ ନିଃସନ୍ଦେହ ଥିଲେ । ତାଙ୍କ ନିଜ ଭାଷାରେ--

"ଅସ୍ଥିର ମାଳା ନାହିଁ, ତ୍ରିଶୂଳ ଡମ୍ବରୁ ନାହିଁ
ବ୍ରହ୍ମ କପାଳ ନାହିଁ, ଭସ୍ମ ଭୂଷଣ ନାହିଁ
ବୃଷଭ ବାହନ ନାହିଁ, ଋଷିପରି ବୃଦ୍ଧ ନୁହେଁ
ପୁଣ୍ୟସ୍ଥାନ ସଂସାରର ଚିହ୍ନ ନାହିଁ

ଯାହାର ନାଁ ମଧ୍ୟ ନାହିଁ
ସେ ଅମ୍ବିଗସ୍ଥ ଚୌଡ଼େୟା ।"

ଅମ୍ବିଗର ଚୌଡ଼େୟା ସଂସାରର ଆକର୍ଷଣ ବିଷୟରେ ଲେଖିଛନ୍ତି—

"ବ୍ରହ୍ମ ବିଷୟରେ କହି
ସୁନ୍ଦରୀ ସ୍ତ୍ରୀଙ୍କ ପାଦ ପାଖରେ ବସିଲେ
ପରବ୍ରହ୍ମ ଚର୍ଚ୍ଚା ସେଇଠି ରହିଲା
ଅମ୍ବିଗର ଚୌଡ଼େୟା ଭଣେ ।"

ଅମ୍ବିଗର ଚୌଡ଼େୟାଙ୍କର ଦେଡ଼ଶହ ବଚନ ଏପର୍ଯ୍ୟନ୍ତ ପ୍ରକାଶିତ ହୋଇଛି ।

—o—

# ହାବନ ହାଲ କଲ୍ଲୟ୍ୟ ।

ବିଜାପୁର ସହରରୁ ୩୭ ମାଇଲ ଦୂରରେ ହାବନ ହାଲ ଗୋଟିଏ ଗାଁ । ଶିବନୟ୍ୟାଙ୍କ ପୁଅ କଲ୍ଲୟ୍ୟା ଏଇ ଗାଁର ବାସିନ୍ଦା । ଶିବନୟ୍ୟା ବ୍ୟବସାୟରେ ସୁନାରି । ଏଇ ବିଜାପୁରରେ ବସବ ମୁଖ୍ୟ ଖଜାଞ୍ଚି ଥିଲେ । ରାଜା ବିଜ୍ଜଲ ଶିବନୟ୍ୟାଙ୍କୁ କେତେକ ସୁନା ଅଲଙ୍କାର କରିବାପାଇଁ ଆଦେଶ ଦେଇଥିଲେ । ଶିବନୟ୍ୟା ତାଙ୍କ ପୁଅକୁ ଅଧିକ ଯୋଗ୍ୟ ମନେକରି ଏ ସବୁ ଅଳଙ୍କାର ତିଆରି କରିବାକୁ କହିଲେ । ଶିବ ଚିନ୍ତାମଗ୍ନ କଲ୍ଲୟ୍ୟା ବାପାଙ୍କ ଆଦେଶ ନ ମାନି ମାଡ଼ ଖାଇଲେ । ସଂସାର ବିରକ୍ତ କଲ୍ଲୟ୍ୟା କ୍ଷୁବ୍ଧ ହୋଇ ଆତ୍ମହତ୍ୟା କରିବାକୁ ଚେଷ୍ଟା କଲାବେଳେ ରୁଦ୍ରମୁନି ନାମକ ଜଣେ ଗୁରୁଙ୍କଠାରୁ ଦୀକ୍ଷା ନେବାକୁ ଶୂନ୍ୟ ଆଦେଶ ପାଇଲେ । କଲ୍ଲୟ୍ୟା ରୁଦ୍ରମୁନିଙ୍କଠାରୁ ଦୀକ୍ଷା ନେଲେ ।

ବଶିଷ୍ଟ କର୍ମଯୋଗୀ ସିଦ୍ଧରାମଙ୍କର ସେ ସହଚର ଥିଲେ । ରୁଦ୍ର ମୁନିଙ୍କ କଥା ମାନି ସେ ବୌଦ୍ଧ ଓ ଲୋକାୟତପନ୍ଥୀ ପଣ୍ଡିତମାନଙ୍କୁ ତର୍କରେ ପରାସ୍ତ କରିଥିଲେ । ଈଶ୍ୱର ସେବା ପରମ ପଦବୀଠାରୁ ମଧ୍ୟ ମହାନ । ଏହିକଥା ସେ ନିମ୍ନ ବଚନରେ ପ୍ରକାଶ କରିଛନ୍ତି ।

"ପରମ ପଦବୀ ତୁମର ଗଳାହାର କର ।
ପରମ ପଦବୀ ତୁମ ଗୃହରେ ରଖ ।
ମୁଁ ତୁମ ସେବାରେ ସନ୍ତୁଷ୍ଟ
ମହାଲିଙ୍ଗ କଲ୍ଲେଶ୍ୱର ।"

ଏପର୍ଯ୍ୟନ୍ତ ତାଙ୍କର ଷାଠିଏଟି ବଚନ ମିଳିଛି ।

—o—

## ମାଡ଼ିବାଳେୟା

ଜାତିରେ ଧୋବା ମାଡ଼ିବାଳେୟା ସତେ ଯେମିତ ମଣିଷ ଜାତିର, ମଣିଷ ସମାଜର ସବୁ ଧୂଳି, ମଳି ଧୋଇ ସଫାକରିବାକୁ ଜନ୍ମ ନେଇଥିଲେ । ତାଙ୍କର ସିଦ୍ଧି ଏତେ ଅପାର ଯେ ପ୍ରଭୁଦେବ ଓ ବସବାଣ୍ଣା ଉଭୟେ ତାଙ୍କର ଗୁଣ କୀର୍ତ୍ତନ କରିଛନ୍ତି । ବସବାଣ୍ଣାଙ୍କ ମତରେ—

"କୋଟିଏ ରୁଦ୍ରଙ୍କର ମରଣହେଲ
ବ୍ରହ୍ମା ବିଷ୍ଣୁ ଅଗଣା କୋଟି ସଂଖ୍ୟାରେ ମରଣ ବରଣ କଲେ ।
ମଣିଷ ଓ ଦେବତା, ଗରୁଡ଼ ଓ ଗନ୍ଧର୍ବ ମରଣ ଲଭିଲେ ।
ସେ ମରଣର ବ୍ୟତିକ୍ରମ, ତେଣୁ ଏମାନଙ୍କର ଏହି ଦଶା ।
ମାଡ଼ିବାଳା ନୂଆ ଧଳା ଲୁଗାକୁ ପବିତ୍ରକରି,
ମତେ ପିନ୍ଧିବାକୁ ଦେଇ ବଞ୍ଚେଇଲେ ।
ହେ କୁଡ଼ଲ ସଙ୍ଗମଦେବ ।"

ପ୍ରଭୁଦେବଙ୍କ ମତରେ—

"ମୁଁ ପବିତ୍ର ହୋଇଛି ।
କୈବଲ୍ୟ ଲାଭ କରିଛି ।
ସବୁ ଜଞ୍ଜାଳର ଊର୍ଦ୍ଧ୍ୱକୁ ଉଠିଛି ।
ମାଢ଼ିବାଳଙ୍କ ପବିତ୍ରତାର ପୋଷାକ ମୁଁ ପିନ୍ଧିଛି ।"

ଶରଣଙ୍କ ସଭାରେ ଅଲ୍ଲମ ମାଡ଼ିବାଳାଙ୍କୁ ପରୀକ୍ଷା କରିବାକୁ ଯେଉଁ ସବୁ ପ୍ରଶ୍ନ ପଚାରିଥିଲେ, ତନ୍ମଧ୍ୟରେ ଜ୍ଞାନର ସ୍ୱରୂପ, ଅନୁଭୂତିର ଅଦ୍ୱୈତ ସିଦ୍ଧି, ପ୍ରସାଦ ଆଦି ଅନ୍ତର୍ଭୁକ୍ତ । ସୂଜ୍ଞାନପ୍ରଶ୍ନରେ ଆଲୋକିତ ମାଢ଼ିବାଳା ଉତ୍ତର ପ୍ରସଙ୍ଗରେ ବସବାଣ୍ଣାଙ୍କ ସମ୍ବନ୍ଧରେ ଗୋଟିଏ ବଚନରେ ଯାହା କହିଥିଲେ ତାହା ଆପଣା ସିଦ୍ଧିର ପରିଚୟ ଦେଇଥିଲ ।

"ସମସ୍ତେ ରୂପ ଅରୂପ ବିଷୟରେ କହନ୍ତି ।
କିନ୍ତୁ ସେ ରୂପ ବା ଅରୂପ ବିଷୟରେ କହନ୍ତି ନାହିଁ,
କାରଣ ସେ ଲିଂଗ, ଜଂଗମ, ପ୍ରସାଦର ସତ୍ତା,
ହେ କଲିଦେବ, ତୁମ ବସବାଣ୍ଣା କେତେ ମୁକ୍ତ
ଓ ବନ୍ଧନ ହୀନ ।"

ଯେଉଁ ବସବଙ୍କ ପରି ଆପଣା ଘରକୁ ଈଶ୍ୱରଙ୍କ ଘରରେ ପରିଣତ କରିପାରେ ଯେ ଆପଣା ଅଙ୍ଗକୁ ସଂସାରରେ ବିଚିତ୍ର ଲିଂଗପରି ଲିଂଗମୟ କରିପାରେ ସେ ସ୍ଥିତିର ଅଧିକାରୀ । ସଂପୂର୍ଣ୍ଣ ସଂସାର ବିରକ୍ତ ସଦ୍‌ଭକ୍ତର ଅଧିକାରୀ ମାଣ୍ଡିବାଳା ବାସ୍ତବତାର ପ୍ରକୃତ ସ୍ୱରୂପ ସମ୍ବନ୍ଧରେ ଅବହିତ ଥିବାରୁ ବୀର ଶୈବଧର୍ମର ପ୍ରଚାର ଦିଗରେ ଓ ବ୍ୟକ୍ତିଗତ ଶରଣଙ୍କର ଜୀବନ ଉନ୍ନତ କରିବା ଦିଗରେ ଯଥେଷ୍ଟ କାର୍ଯ୍ୟ କରିବାରେ ସକ୍ଷମ ହୋଇଛନ୍ତି ।



## ମୁକ୍ତାୟକ୍କା

ବିଜାପୁର ଜିଲ୍ଲାରେ ମସଲକଲ୍ଲୁ ଗ୍ରାମରେ ମୁକ୍ତାୟକ୍କା ୧୮୭୦ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ । ସେ ଆଶ୍ଚର୍ଯ୍ୟଯୋଗୀ ଅଜଗଣ୍‌ଣାଙ୍କ ଭଉଣୀ । ଅଜଗଣ୍‌ଣା ଯେ କେବଳ ବାହ୍ୟ ଉପାସନା ତ୍ୟାଗ କରିଥିଲେ ନୁହେଁ, ସେ ଥିଲେ ମୌନୀ । ଥରେ ଅଜଗଣ୍‌ଣା ଦୁଆର ବନ୍ଧରେ ବାଡ଼େଇ ହୋଇ ଯିବାରୁ ତାଙ୍କ ମୁହଁରୁ ଶିବ ମନ୍ତ୍ର ବାହାରି ପଡ଼ିଲା । ସେ ଅକାରଣରେ ଶିବ ସମ୍ବୋଧନ କରିଥିବାରୁ ଆପଣା ଦେହତ୍ୟାଗ କରିଥିଲେ । ଯେତେବେଳେ ଯୋଗୀ ଅଜଗଣ୍‌ଣାଙ୍କ ମୃତ୍ୟୁରେ ମୁକ୍ତାୟକ୍କା ବ୍ୟଥିତା, ସେତେବେଳେ ଅଲ୍ଲାମ ତାଙ୍କୁ ଭେଟିଲେ । ଉଭୟଙ୍କ ମଧ୍ୟରେ ଯେଉଁ ପ୍ରବଚନ ହୋଇଥିଲା ତାହା ବୁଦ୍ଧିଦୃପ୍ତ ଓ ମିଷ୍ଟିକ୍ ଅନୁଭୂତିର ଚୂଡ଼ାନ୍ତ ନିଦର୍ଶନ ।

ଅଜଗଣ୍‌ଣା ଅନାବଶ୍ୟକ ଶବ୍ଦ ଉଚ୍ଚାରଣ କରିଥିବାରୁ ମୃତ୍ୟୁବରଣ କରିଥିଲେ । ଅଲ୍ଲମ ପୁଣି ସେହି ଅନାବଶ୍ୟକ ଶବ୍ଦ ପ୍ରୟୋଗକରି ସାନ୍ତ୍ୱନା ଦେବାକୁ ଆସିଛନ୍ତି । ମୁକ୍ତାୟକ୍କା ଏପରି ଅଶୁଚି ଶବ୍ଦ ବ୍ୟବହାରର ଉପଯୋଗିତା ସମ୍ବନ୍ଧରେ ପ୍ରଶ୍ନ କରିଛନ୍ତି । ପ୍ରଭୁ ମୁକ୍ତାୟକ୍କାଙ୍କ ତର୍କ ସ୍ୱୀକାର କଲେ ମଧ୍ୟ ଶେଷ ପର୍ଯ୍ୟନ୍ତ ଅଜଗଣ୍‌ଣାଙ୍କ ପରି ଏକ ଜ୍ଞାନୀ, ମହାଯୋଗୀଙ୍କର ମୃତ୍ୟୁରେ ବ୍ୟଥିତ ହେବାର ଅସାରତା ସମ୍ବନ୍ଧରେ ତାଙ୍କୁ ବୁଝାଇଛନ୍ତି ।

ମୁକ୍ତାୟକ୍କାଙ୍କ ବାଣୀ "ମନ ହିଁ ମନର ପ୍ରମାଣ ଶବ୍ଦ ନୁହେଁ" ଆଜିପର୍ଯ୍ୟନ୍ତ ଜନମାନସକୁ ପ୍ରଭାବିତ କରୁଛି ।



## ଷଣ୍ମୁଖସ୍ୱାମୀ

ଷଣ୍ମୁଖ ସ୍ୱାମୀଙ୍କ ଜୀବନୀ ବିଷୟରେ ଅତ୍ୟନ୍ତ ଅଳ୍ପ ତଥ୍ୟ ମିଳେ । ସେ ବସବଙ୍କର ସମସାମୟିକ ନଥିଲେ । ସେ ୧୬ଶ ଶତାବ୍ଦୀର ଉତ୍ତରାର୍ଦ୍ଧ କିମ୍ବା ୧୭ଶ ଶତାବ୍ଦୀର ପୂର୍ବାର୍ଦ୍ଧରେ ଥିବା ଜଣାଯାଏ । ଗୁଲବର୍ଗା ଜିଲ୍ଲାର ଯୁବର୍ଗିଠାରେ ଥିବା ମଠରେ ତାଙ୍କ ପରେ ୩୩ଜଣ ମହନ୍ତ ଏପର୍ଯ୍ୟନ୍ତ ହୋଇଥିବା ଜଣାଯାଏ । ସେ ସଂପୂର୍ଣ୍ଣ ଈଶ୍ୱର ଲୀନ ଥିଲେ । ଗୋଟିଏ ବଚନରେ ସେ କହନ୍ତି—

"ମୋର ସ୍ଥୂଳ ଶରୀରଘରେ ମୁଁ ଲିଙ୍ଗଜ୍ୟୋତି ପୂର୍ଣ୍ଣ କଲି ।
ମୋର ସୂକ୍ଷ୍ମ ଶରୀରର ଘରେ ମୁଁ ମନ୍ତ୍ର ଜ୍ୟୋତି ପୂର୍ଣ୍ଣ କଲି ।
ମୋର କାରଣ ଶରୀର ଘରେ ମୁଁ ଜ୍ଞାନଜ୍ୟୋତି ପୂର୍ଣ୍ଣ କଲି ।
ମୋର ଅନ୍ତର ବାହାରରେ ଜ୍ୟୋତିର ଜ୍ୟୋତି ପୂର୍ଣ୍ଣ କରି
ମୁଁ ଘୂରି ବୁଲୁଛି । ଅଖଣ୍ଡେଶ୍ୱର ।"

—o—

## ଦେବର ଦାସୀମଯ୍ୟ

ଦେବର ଦାସୀମଯ୍ୟ ବଚନକାରମାନଙ୍କ ମଧ୍ୟରେ ପ୍ରାଚୀନତମ । ୧୦ମ ଶତକରେ ମୁଦନୂରୁ ଗ୍ରାମରେ ସେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ଇଷ୍ଟଦେବତା ରାମନାଥ । ତାଙ୍କର ବଚନ ଗୁଡ଼ିକ ତେଣୁ ରାମନାଥଙ୍କୁ ଉଦ୍ଦିଷ୍ଟ, ଉତ୍ସର୍ଗୀକୃତ ।

କଥାରେ ଅଛି, ଦେବର ଦାସୀମଯ୍ୟ ଶିବଲାଭ ଆଶାରେ କୃଚ୍ଛ୍ର ସାଧନା କରୁଥିଲେ । ଶିବ ନିଜେ ତାଙ୍କୁ ସାକ୍ଷାତ ଦେଇ ଶରୀରକୁ କ୍ଳେଶ ଦେବା ପରିବର୍ତ୍ତେ 'କାୟକ' ଜରିଆରେ ଶିବପ୍ରାପ୍ତି ପାଇଁ ତାଙ୍କୁ ଉପଦେଶ ଦେଇଥିଲେ । ଦାସୀମଯ୍ୟ ସେଇଦିନୁ ତନ୍ତକୁ ଆପଣା ସାଧନାର ଅଙ୍ଗରୂପେ ଗ୍ରହଣ କଲେ ।

ଦାସୀମଯ୍ୟଙ୍କ ବିଷୟରେ ବହୁ ପ୍ରବାଦ ଅଛି । ସେ ବୀର ଶୈବଧର୍ମର ପ୍ରଚାର ପାଇଁ ଜପର ବଣ୍ୟ ଜାତି, ବ୍ରାହ୍ମଣ ଓ ଜୈନରାଜା, ପଣ୍ଡିତ ଓ

ଅନ୍ୟ ଧର୍ମର ଗୁରୁମାନଙ୍କ ସହ ତର୍କକରି ଆପଣାର ଅଦ୍ୱିତୀୟ ଶକ୍ତି ଦେଖାଇ ସେମାନଙ୍କୁ ନିଜ ଧର୍ମରେ ଦୀକ୍ଷିତ କରାଇଥିଲେ, ତାହାହିଁ ଏ ପ୍ରବାଦ ଗୁଡ଼ିକର ଉପଜୀବ୍ୟ । ସେ ବୈଷ୍ଣବମାନଙ୍କ ଆହ୍ୱାନରେ କିପରି ବିଷ୍ଣୁ ପ୍ରତିମାରେ ଶିବ ରୂପ ଦେଖାଇଥିଲେ, ଜୈନମାନଙ୍କ ଦ୍ୱାରା ଅଣାହୋଇଥିବା ମାଠିଆ ଭିତରେ ଗୋଖର ସାପକୁ ସେ ଅବହେଳାରେ ଧରି କିପରି ତାଙ୍କୁ ଲିଙ୍ଗରେ ପରିବର୍ତ୍ତିତ କରିଥିଲେ ଏସବୁ ଏଯାଏ ଲୋକ ମୁହଁରେ ରହିଛି । ଦେବର ଦାସୀମୟ୍ୟ ବିଭା ହେବା ପୂର୍ବରୁ ଆପଣା କନ୍ୟାକୁ ପରୀକ୍ଷା କରିବାକୁ ଯେଉଁ ବାଲି ରାନ୍ଧିବାକୁ ଦେଇଥିଲେ ଭକ୍ତିମତୀ ଦୁଗ୍‌ଗାଲେ ସେହି ବାଲି ରାନ୍ଧି ଭାତ ପରଶିଥିଲେ । ଏପରି ଏକ ଶିବଗତପ୍ରାଣା ସ୍ତ୍ରୀକୁ ଶିବ ସନ୍ତୁଷ୍ଟ ହୋଇ ଯେ ଅକ୍ଷୟ ଭଣ୍ଡାର ତଣ୍ଡୁଳ ଦେଇଥିଲେ ଏଥିରେ ଆଶ୍ଚର୍ଯ୍ୟ କିଛିନାହିଁ । ଚାଲୁକ୍ୟରାଜା ଜୟସିଂହ ନିଜେ ଜୈନ୍ୟ ଥିଲେସୁଦ୍ଧା ତାଙ୍କ ରାଣୀ ସୁଗାଲେ ଶିବଗତପ୍ରାଣା । ତାଙ୍କୁ ଦୀକ୍ଷା ଦେଲାପରେ କିପରି ରାଜା ରାଣୀଙ୍କ ବିଦ୍ୱେଷ ବଢ଼ିଲା ଏବଂ ଜୈନ ଓ ଶୈବଙ୍କ ମଧ୍ୟରେ ବିଦ୍ୱେଷ ବଢ଼ିଲା, ଏହା ଅନେକ ଲେଖିଯାଇଛନ୍ତି । ଦେବର ଦାସୀମୟ୍ୟ ଉଭୟ ତର୍କ ଓ ଆଶ୍ଚର୍ଯ୍ୟ କ୍ରିୟା ବଳରେ ଜୈନଙ୍କୁ ପରାସ୍ତ କରି କେବଳ ଯେ ରାଜା ଓ ତାଙ୍କର ଅନୁଗାମୀଙ୍କୁ [illegible] ଶୈବ ଧର୍ମରେ ଦୀକ୍ଷିତ କରିଥିଲେ ନୁହେଁ, ପ୍ରାୟ ୪୦୦ରୁ ଊର୍ଦ୍ଧ୍ୱ ଜୈନ ମନ୍ଦିରକୁ ଶୈବ ମନ୍ଦିରରେ ପରିଣତ କରାଇଥିଲେ । ଦେବର ଦାସୀମୟ୍ୟ ଏକ ବଚନରେ କହିଛନ୍ତି—

"ପ୍ରଭୁ ମୁଁ ତୁମର କଅଣ କରିବି ?
ତୁମ କେଉଁଠୁ ବାହାର କରିବି ?
କେଉଁଠି ବା ଭୂଷିବ ?
ତୁମେ ସାରା ପୃଥିବୀ ବ୍ୟାପି ରହିଛ
ହେ ରାମନାଥ ।"

ବାହାର ଜଗତର ପ୍ରତ୍ୟେକ ବସ୍ତୁରେ ଈଶ୍ୱରାନୁଭବ କରୁଥିବା ଭକ୍ତ ଯେ ଈଶ୍ୱର ଅନୁଗ୍ରହ ଲାଭ କରିବ, ଏହା ସ୍ୱାଭାବିକ । ଅନ୍ୟ ଏକ ବଚନରେ ସେ କହିଛନ୍ତି —

"ଭୋକ ଏକ ବଡ଼ ସାପ
ଏହା ଜୀବନ ନାଟିକାକୁ ଧରିଛି ।
ଏହାର ବିଷ ପାଦ ଆଙ୍ଗୁଠିରୁ କପାଳଯାଏ ଉଠିଲାଣି,

ସଂସାରର ପ୍ରକୃତ ଖେଳା,
ଏଇ ଶୋକ ସାପକୁ, ଖୁଆଇ ପାରିବ !
ବିଷକୁ ତଳକୁ ଆଣି ପାରିବ,
ହେ ରାମନାଥ ! ”

ନିଜେ ଦରିଦ୍ର, ନିଜ ବୁଦ୍ଧିରୁ ଆଉ ଆପଣା ପରିଶ୍ରମରୁ କୌଣସି ମତେ ଜୀବନ ଧାରଣ କରିଥିବା ଭକ୍ତ ସୂର ପାଞ୍ଚର ଶୋକ ବିଷୟରେ ଯଥେଷ୍ଟ ସଚେତନତା ଦେଖାଇଛନ୍ତି । ଏଇ ଶୋକ କିନ୍ତୁ ଈଶ୍ୱର ପ୍ରାପ୍ତିର ବାଧକ ନୁହେ । ଈଶ୍ୱର କରୁଣା ହେଲେ ଦରିଦ୍ର ମଧ୍ୟ ଅକ୍ଷୟ ଭଣ୍ଡାରର ଅଧିକାରୀ ହୋଇପାରେ ।



# ପାରିଭାଷିକ ଶବ୍ଦ

ବଚନଗୁଡ଼ିକ ସାଧାରଣ ଲୋକଙ୍କପାଇଁ ଉଦ୍ଦିଷ୍ଟ ହୋଇଥିଲେ ସୁଦ୍ଧା ଏଥିରେ ଅନେକ ପାରିଭାଷିକ ଶବ୍ଦ ଅଛି । "ଶରଣ" ଏହିପରି ଏକ ପାରିଭାଷିକ ଶବ୍ଦ । ଆତ୍ମଜ୍ଞାନୀ ହିଁ ଶରଣ । ଏହି ଶରଣଙ୍କର ବିଭିନ୍ନ ଗୁଣ ସମ୍ବନ୍ଧରେ ବଚନକାରମାନେ ବହୁ କଥା ଲେଖି ଯାଇଛନ୍ତି । ଗୋଟିଏ କଥାରେ କହିଲେ ପ୍ରକୃତ ଶରଣ ଶିବ ସ୍ୱରୂପ । ସେମାନେ ସଂସାରରେ ଥାଇ ମଧ୍ୟ ସଂସାର ବନ୍ଧନ ମୁକ୍ତ । ପ୍ରସ୍ତୁତ ବଚନ ଗୁଡ଼ିକରେ ଶରଣମାନଙ୍କ ସମ୍ବନ୍ଧରେ ବହୁ ବିସ୍ତାର ରହିଥିବାରୁ ଏଠି ସବିଶେଷ ଆଲୋଚନା କରାଯାଇ ନାହିଁ ।

"ଅନୁଭବ" ଅନ୍ୟ ଏକ ପାରିଭାଷିକ ଶବ୍ଦ । ଏ ସମ୍ବନ୍ଧରେ କିଞ୍ଚିତ ଆଲୋଚନା ମୁଖବନ୍ଧରେ କରାଯାଇଛି ।

ଏଠି କେବଳ ଦୁଇଟି ମୁଖ୍ୟ ବିଷୟର ଷଟ୍‌ସ୍ଥଳ ଓ ଅଷ୍ଟାବରଣ ସମ୍ବନ୍ଧରେ ସମ୍ୟକ ଆଲୋଚନା କରାଯାଇଛି । ଏହି ବିଷୟର ପ୍ରସଙ୍ଗରେ ବିଭିନ୍ନ ଭକ୍ତ ଓ ପୂଜାର ବିଭିନ୍ନ ଉପକରଣ ସଂପର୍କିତ କେତେକ ଶବ୍ଦର ବିଶ୍ଳେଷଣ ମଧ୍ୟ କରାଯାଇଛି । ଅଯଥା ବିସ୍ତାର ଭୟରେ ପାରିଭାଷିକ ଶବ୍ଦର ସଂଖ୍ୟା ସୀମିତ ରଖା ଯାଇଛି ।

**ଷଟ୍‌ସ୍ଥଳ :—**

ବୀର ଶୈବ ମତରେ 'ସ୍ଥଳ' ହେଉଛି ଏକ ପାରିଭାଷିକ ଶବ୍ଦ । ଅନେକ ବୀର ଶୈବ ମତକୁ ଷଟ୍‌ସ୍ଥଳ ମତ ବୋଲି କହିଥାନ୍ତି । 'ଲିଙ୍ଗ' ହେଉଛି ଉପନିଷଦର ପରବ୍ରହ୍ମ । ସ୍ଥଳ ହେଉଛି ପୂର୍ଣ୍ଣବ୍ରହ୍ମ, ସଚ୍ଚିଦାନନ୍ଦମୟ ଲିଙ୍ଗ, ପୁଣି ସେହି ଲିଙ୍ଗର ନିବାସଭୂମି । ସମସ୍ତ ଦୃଶ୍ୟମାନ ଜଗତ ଏହି ସ୍ଥଳରୁ ସୃଷ୍ଟି, ପୁଣି ସେହି ସ୍ଥଳରେ ତାର ଲୟ । ମନସ୍ତାତ୍ତ୍ୱିକ ଦୃଷ୍ଟିରୁ ବିଚାରକଲେ, ସ୍ଥଳ ହେଉଛି ଆଧ୍ୟାତ୍ମିକ ଅନୁଭବର ସ୍ତର ।

ବୀର ଶୈବ ମତରେ ଆଧ୍ୟାତ୍ମିକ ପ୍ରଚେଷ୍ଟାର ପ୍ରାଥମିକ ସ୍ତରରେ ଉପାସକ, ଉପାସ୍ୟ, ଭକ୍ତ, ଦେବ ପାର୍ଥକ୍ୟ ଥାଏ । ଶୈବ ସାହିତ୍ୟରେ ଏହାକୁ 'ଅଙ୍ଗ' ଓ 'ଲିଙ୍ଗ'ର ପାର୍ଥକ୍ୟ ବୋଲି କୁହାଯାଇଛି । ସାଧକ ଯେତେବେଳେ ଲିଙ୍ଗାଚାର, ସଦାଚାର, ଶିବାଚାର, ଭୃତ୍ୟାଚାର ଓ ଗଣାଚାର ଭେଦରେ ପଞ୍ଚାଚାର ପାଳନକରି

ସାଧନା ପଥରେ ଅଗ୍ରଗତି କରେ ସେତେବେଳେ କ୍ରମେ ଅଙ୍ଗ ଓ ଲିଙ୍ଗର ଭେଦ-ଲୋପପାଇ ଜୀବାତ୍ମା (ଅଙ୍ଗ) ଓ ପରମାତ୍ମା (ଲିଂଗ)ର ଅଦ୍ୱୈତ ସିଦ୍ଧି ହୁଏ । ଏହି ଦୃଷ୍ଟିରୁ ଏହି ମତକୁ ଶିବାଦ୍ୱୈତ ବା ଶକ୍ତିବିଶିଷ୍ଟା ଦ୍ୱୈତ ମତ କୁହାଯାଏ ।

ସାଧନର ଏହି ୬ ସୋପାନକୁ ଯଥାକ୍ରମେ ଭକ୍ତ, ମହେଶ, ପ୍ରସାଦ, ପ୍ରାଣଲିଙ୍ଗୀ, ଶରଣ ଓ ଐକ୍ୟ ରୂପେ ନାମିତ କରାଯାଇଛି । ଭକ୍ତ ଓ ଭଗବାନ ମଧ୍ୟରେ ଦ୍ୱୈତ ସଂପର୍କରୁ ଆରମ୍ଭକରି ଉଭୟଙ୍କ ମଧ୍ୟରେ ଐକ୍ୟ ସାଧନ ମଧ୍ୟରେ ବିଭିନ୍ନ ଐଶୀଗୁଣର ବିକାଶ ହୁଏ ।

ଭକ୍ତର ଗୁରୁପ୍ରଦତ୍ତ ଇଷ୍ଟଲିଙ୍ଗ ପ୍ରତି ଭକ୍ତି ପ୍ରକଟନ ସାଧନାର ପ୍ରଥମ ସୋପାନ । ଏହିଭକ୍ତି ହେଉଛି ଶ୍ରଦ୍ଧାଭକ୍ତି ଓ ଏହି ସ୍ଥଳର ନାମ ଭକ୍ତ ସ୍ଥଳ ।

ଭକ୍ତର ଉପଲବ୍ଧି ବୃଦ୍ଧିହେଲେ ଇଷ୍ଟଲିଙ୍ଗରେ **"ନିଷ୍ଠାଭକ୍ତିହୁଏ"** ଏହି ସ୍ତରକୁ **ମହେଶ୍ୱରସ୍ଥଳ** କୁହାଯାଏ । ଆଧ୍ୟାତ୍ମିକ ପ୍ରଗତିରେ ଅଗ୍ରଗତି ହେଲେ ସାଧକ ଆପଣା ପ୍ରକୃତି ଓ ବାହାର ଜଗତରେ ଥିବା ଅପବିତ୍ରତା ସମ୍ବନ୍ଧରେ ସଚେତନ ହୁଏ । ଅର୍ଚ୍ଚନା ଓ ଅର୍ପଣ ଦ୍ୱାରା ଲିଙ୍ଗର ଆରାଧନାକରି ସାଧକ ଆପଣାକୁ ଶୁଦ୍ଧ କଲେ ପ୍ରସାଦ ଲାଭକରେ । ଇଷ୍ଟଲିଂଗ ପ୍ରତିରେ ଏକାନ୍ତ ସମର୍ପଣକୁ **ଅବଧାନ** ଭକ୍ତି ଓ ଏହି ସ୍ଥଳକୁ **ପ୍ରସାଦୀସ୍ଥଳ** କୁହାଯାଏ ।

ଚିତ୍ତକୁ ଅନ୍ତର୍ମୁଖୀକରି ଆତ୍ମାନୁଭୂତି ଲାଭକଲେ ପ୍ରାଣଲିଂଗରେ ନିବିଷ୍ଟ ହୁଏ । ଚରଲିଂଗରେ **ଅନୁଭାବଭକ୍ତି**ର ଏହି ସ୍ତରକୁ **ପ୍ରାଣ ଲିଙ୍ଗସ୍ଥଳ** କୁହାଯାଏ ।

ନିଜ ମଧ୍ୟରେ ଜ୍ଞାନ ପ୍ରକାଶ ହେତୁ ଆଧ୍ୟାତ୍ମିକ ତତ୍ତ୍ୱର ଅନୁଭବ ହେଲେ ସାଧକ ଲିଂଗରେ ସଂପୂର୍ଣ୍ଣ ରୂପେ ଆତ୍ମସମର୍ପଣ କରେ । ସେତେବେଳେ ସେ ଆଧ୍ୟାତ୍ମିକ ଆନନ୍ଦାଲୋକରେ ବାସକରେ । ପ୍ରସାଦଲିଂଗରେ **ଆନନ୍ଦଭକ୍ତି**ର ଏହି ସ୍ତରର ନାମ ଶରଣ ସ୍ଥଳ ।

ଶେଷସ୍ତରରେ ଅଂଗ ଓ ଲିଂଗ ମଧ୍ୟରେ ଭେଦ ଲୋପ ପାଇ ଅଂଗ ଲିଂଗର ସମସ୍ତ ଗୁଣ ଅଂଗୀଭୂତକରି ଶେଷକୁ ଲିଂଗ ସାରୂପ୍ୟ ଲାଭ କରେ । ଏହି ଐକ୍ୟ ବୋଧ ଜନିତ ଭକ୍ତି **ସମରସଭକ୍ତି** ଓ ଏହି ସ୍ଥଳର ନାମ ଐକ୍ୟସ୍ଥଳ ।

ବୀର ଶୈବ ମତରେ ଭକ୍ତି, ଜ୍ଞାନ ଓ କ୍ରିୟା ଉପରେ ସମାନ ଜୋର ଦିଆଯାଇଛି । ଏହି ତିନୋଟିର ସୁସଂଗତ ସମନ୍ୱୟ ଏକତ୍ରୀକରଣରେ ଆଧ୍ୟାତ୍ମିକ ପ୍ରଗତି ହୋଇଥାଏ, ଯାହାର ବିକାଶରୁ ମନକୁ ଶୁଦ୍ଧକରି ଲିଙ୍ଗୈକ୍ୟ ଲାଭ କରିବା ଷଟ୍‌ସ୍ଥଳ ବିଧିର ଲକ୍ଷ୍ୟ ।

## ଅଷ୍ଟାବରଣ :—

'ଆବରଣ' ଶବ୍ଦର ଅର୍ଥ ଘୋଡ଼େଇବା । ଯୁଦ୍ଧବେଳେ ସାଞ୍ଜୁ ଯେପରି ଶରୀରର ଆବରଣ, ସଂସାର ଯୁଦ୍ଧରେ ସେହିପରି କେତେକ ଆଧ୍ୟାତ୍ମିକ ସାଞ୍ଜୁ ରୂପରେ କାମକରନ୍ତି । ସଂସାରର ବିଭିନ୍ନ ଦୁଃଖ ଶୋକ ବିରୁଦ୍ଧରେ ଏଗୁଡ଼ିକ ଡ଼ଉଁରିଆ । ସାଧକକୁ ସାଧନ ପଥରେ ଆଗେଇ ନେବାକୁ ଏଗୁଡ଼ିକର ସାହାଯ୍ୟ ଅତ୍ୟାବଶ୍ୟକ । ବୀରଶୈବ ମତରେ ଏପରି ଆଠଟି ଆବରଣର କଳ୍ପନା କରାଯାଇ ଥିବାରୁ ଏଗୁଡ଼ିକୁ ଅଷ୍ଟାବରଣ କୁହାଯାଏ । ଏଗୁଡ଼ିକ ହେଉଛନ୍ତି, ଗୁରୁ, ଲିଙ୍ଗ, ଜଙ୍ଗମ, ପାଦୋଦକ (ତୀର୍ଥ) ପ୍ରସାଦ, ଭସ୍ମ, ରୁଦ୍ରାକ୍ଷ ଓ ମନ୍ତ୍ର । ଏଗୁଡ଼ିକୁ ସଂସାର ସାଗର ତରିବା ପାଇଁ ଭେଳାରୂପେ ବର୍ଣ୍ଣନା କରାଯାଇଛି ।

ଗୁରୁ ହେଉଛନ୍ତି ଆଧ୍ୟାତ୍ମିକ ସାଧନାର ମାର୍ଗଦର୍ଶକ । ସେ କେବଳ ମନ୍ତ୍ର ଦୀକ୍ଷା ଦିଅନ୍ତି ନାହିଁ, ଜୀବାତ୍ମା ମଧ୍ୟରେ ଥିବା ଲିଙ୍ଗର ସନ୍ତକ ଅଷ୍ଟଲିଙ୍ଗ ଆକାରରେ ଧାରଣ କରିବାକୁ ସେ ଦିଅନ୍ତି । ଗୁରୁକୃପା ସାଧନାର ସିଦ୍ଧିପାଇଁ ଏକାନ୍ତ ପ୍ରୟୋଜନ । ହାଣ୍ଡି ଓ ଅଲଙ୍କାର କରିବାପାଇଁ ଯେପରି ମାଟି ଓ ସୁନା ପ୍ରୟୋଜନ ଲିଙ୍ଗାନୁଭବ ପାଇଁ ସେହିପରି ଗୁରୁଙ୍କର ପ୍ରୟୋଜନ । ଶାସ୍ତ୍ରରେ କୁହାଯାଇଛି, ଗୁରୁ ଗୁଣବାନ୍, ପ୍ରାଜ୍ଞ, ଲିଙ୍ଗ ଅଙ୍ଗସ୍ଥଳ ଭେଦଜ୍ଞ, ଦୀକ୍ଷାକର୍ମରେ କୁଶଳ ଓ ମୋକ୍ଷର ମୂଳକାରଣ । ଗୁରୁ ଶିବସ୍ୱରୂପ । ଗୁରୁ ଶିବ କ୍ରୋଧରୁ ଭକ୍ତକୁ ବଞ୍ଚାଇବା ସମ୍ଭବ । କିନ୍ତୁ ଗୁରୁ କ୍ରୋଧ କରିଥିବା ଭକ୍ତକୁ ଶିବ ମଧ୍ୟ ରକ୍ଷାକରିବା ଅସମ୍ଭବ । ଶିବ ନିଜେ କହିଛନ୍ତି ଯେ ଗୁରୁଙ୍କଠାରୁ ଉଚ୍ଚ କେହିନାହିଁ । ଗୁରୁଯାତ୍ରା, ଦେବଯାତ୍ରା ଓ ତୀର୍ଥଯାତ୍ରା ମଧ୍ୟରେ ଏହି ଗୁରୁଯାତ୍ରାକୁ ଅଧିକ ପ୍ରାଧାନ୍ୟ ଦିଆଯାଇଛି । ଦୀକ୍ଷା, ଶିକ୍ଷା ଓ ମୋକ୍ଷ ପାଇଁ କାର୍ଯ୍ୟକରୁଥିବାରୁ ଗୁରୁଙ୍କୁ ଦୀକ୍ଷାଗୁରୁ, ଶିକ୍ଷାଗୁରୁ ଓ ଜ୍ଞାନଗୁରୁ କୁହାଯାଇଛି ।

ଲିଙ୍ଗ ଉପାସ୍ୟ ବସ୍ତୁ ମାତ୍ର ନୁହେଁ, ଲିଙ୍ଗ ନିଜେ ପରବ୍ରହ୍ମ । ପରବ୍ରହ୍ମ ସାଧକର ଅଙ୍ଗରେ ହିଁ ବାସ କରନ୍ତି । ଗୁରୁଙ୍କର ଆଧ୍ୟାତ୍ମିକ ଶକ୍ତି ପରବ୍ରହ୍ମଙ୍କର ଶକ୍ତିକୁ ଇଷ୍ଟଲିଙ୍ଗ ସ୍ଥାପନକରେ । ଅଭୀଷ୍ଟ ପୂରଣକାରୀ ଏହି ଲିଙ୍ଗ ଯାହା ଅନିଷ୍ଟ ତହିଁରୁ ସାଧକକୁ ରକ୍ଷାକରେ । ତେଣୁ ଏହାର ନାମ ଇଷ୍ଟଲିଙ୍ଗ । ଲିଂଗ ହେଉଛି

ଶିବ ଓ ଶକ୍ତିଙ୍କର ଉଭୟାତ୍ମକ ରୂପ । ପରବ୍ରହ୍ମ ନିରାକାର ଓ ନିଷ୍ପନ୍ଦ । କନ୍ନଡର ଶୈବ ଦାର୍ଶନିକଙ୍କ ମତରେ ଏହି ନିରାକାର ଓ କାୟାତୀତ ବ୍ରହ୍ମଙ୍କର ଅନୁଭୂତି ଉପରେ ହିଁ ସମ୍ଭବ । ତେଣୁ ସଦାସର୍ବଦା ଇଷ୍ଟଲିଙ୍ଗ ଧାରଣ କରିବାକୁ ସେମାନେ ନିର୍ଦ୍ଦେଶ ଦେଇଛନ୍ତି । ଲିଙ୍ଗ ଉପାସ୍ୟ ଅଙ୍ଗ ଉପାସକ । ଏଠି ଅଂଗ ଶରୀର ନୁହେଁ ଆତ୍ମା ନିର୍ନିମେଷ ଦୃଷ୍ଟିରେ ଲିଂଗଠାରେ ଧ୍ୟାନରଖି ସାଧକ ସୂକ୍ଷ୍ମ ଲିଂଗରେ ଥିବା ପ୍ରାଣଲିଙ୍ଗ ଓ କାରଣ ଅଂଗରେ ଥିବା ଭାବଲିଂଗରେ ମନ ନିବଦ୍ଧ କରେ । ଇଷ୍ଟଲିଂଗ ଏହି ଅନୁଭୂତିରେ ସାହାଯ୍ୟକରେ ।

ଜଂଗମ ଯାହା ଚଳେ, ଅନ୍ୟ ଅର୍ଥରେ ଜ୍ଞାନକୁ ମଧ୍ୟ ବୁଝାଏ । ଅର୍ଥ ବୃଦ୍ଧି ହେତୁ ଯେଉଁଲୋକ ପରମ ଜ୍ଞାନର ଅଧିକାରୀ ସେ ଜଂଗମ । ସେ କୌଣସି ଏକ ସ୍ଥାନରେ ରହେନାହିଁ. ବୁଲିବା ହିଁ ତା'ର ଧର୍ମ । ବିଭିନ୍ନ ସ୍ଥାନରେ ସାଧକକୁ ଶିବ ସ୍ୱରୂପସହ ପରିଚିତ କରାଇବା ଜଂଗମର ଲକ୍ଷ୍ୟ । କଥାରେ ଅଛି ଶିବ ନିଜେ ଜଂଗମ ବେଶରେ ପୃଥିବୀ ପରିକ୍ରମା କରନ୍ତି । ଜଂଗମ କାମ, କ୍ରୋଧ ନିର୍ମୁକ୍ତ । ଶାନ୍ତ, ସମବୁଦ୍ଧି, ସୁଖ ଦୁଃଖରେ ସମଦୃଷ୍ଟି ସର୍ବଜ୍ଞ ସଞ୍ଚାରଶୀଳ । ଏହାକୁ ଗୀତାର ସ୍ଥିତପ୍ରଜ୍ଞ ସହ ତୁଳନା କରାଯାଇଥାଏ । ଜଂଗମମାନେ ଆତ୍ମାନୁଭୂତି ସ୍ତରଭେଦରେ ସ୍ୱୟଂ, ଚର ଓ ପର ତିନି ଭାଗରେ ବିଭକ୍ତ ।

ପାଦୋଦକ ବୀର ଶୈବ ମତରେ ସ୍ୱତନ୍ତ୍ର ଅର୍ଥରେ ବ୍ୟବହୃତ । ପାଦ ହେଉଛନ୍ତି ଗୁରୁ ଓ ଉଦକ ଶିଷ୍ୟ । ଦୀକ୍ଷାରେ ଉଭୟର ମିଳନ । ପୁଣି ଅନ୍ୟ ଅର୍ଥରେ ପାଦ ହେଉଛି ପରମଆନନ୍ଦ ଓ ଉଦକ ଜ୍ଞାନ । ଗୁରୁ କୃପାରୁ ସାଧକ ଜ୍ଞାନଲାଭ କରେ । ପରମ ଆନନ୍ଦର ଅଧିକାରୀ ହୁଏ ।

ଅନ୍ୟ ଏକ ଅର୍ଥରେ ପା' "ପରମଜ୍ଞାନ," ଦୋ—"ଦୋଷନାଶନ," ଦ' 'ଜନ୍ମ ମରଣ ବନ୍ଧନମୁକ୍ତ", କ—"କର୍ମଚ୍ଛେଦନ" । ଗୁରୁ, ଲିଂଗ ଓ ଜଂଗମ ପରବ୍ରହ୍ମଙ୍କ ରୂପ ରୂପେ ସ୍ୱୀକୃତ । ଗୁରୁ ଓ ଜଂଗମ ସ୍ନାନ ଆଦି ଶେଷ କରି ଇଷ୍ଟଲିଂଗ ରଚନା କରନ୍ତି । ତାହାପରେ ସାଧକ ଗୁରୁ ଓ ଜଂଗମଙ୍କର ପାଦ ପ୍ରକ୍ଷାଳନକରି ପାଦୋଦକ ସଂଗ୍ରହ କରନ୍ତି । ଗୁରୁପାଦୋଦକ, ଜଂଗମ ପାଦୋଦକ ଓ ଲିଂଗ ପାଦୋଦକକୁ ଯଥାକ୍ରମେ ଦୀକ୍ଷା ପାଦୋଦକ, ଶିକ୍ଷା ପାଦୋଦକ ଓ ଜ୍ଞାନ ପାଦୋଦକ ରୂପେ ନାମିତ କରାଯାଇ ଥାଏ ।

'ପ୍ରସାଦ'ର ଅର୍ଥ ଅନୁଗ୍ରହ । କୌଣସି ପଦାର୍ଥ ଈଶ୍ୱରଙ୍କୁ ସମର୍ପଣ ନକରି, ଗ୍ରହଣ ନକରିବାକୁ ଶାସ୍ତ୍ରରେ ଉପଦେଶ ଦିଆଯାଇଛି । "ତେନ ତ୍ୟକ୍ତେନ

ଭୁଞ୍ଜିଥା'' ଅନୁସରଣ କଲେ ଅହଙ୍କାର ନାଶ ଓ ଈଶ୍ୱର କୃପାଲାଭ । ଗୁରୁ, ଲିଙ୍ଗ ଓ ଜଙ୍ଗମଙ୍କୁ ଦିଆଯାଇଥିବା ଖାଦ୍ୟ ଯଥାକ୍ରମେ ଶୁଦ୍ଧି, ସିଦ୍ଧି ଓ ପ୍ରସିଦ୍ଧ ପ୍ରସାଦ । ସାଧକ ଉପରେ ପାଦୋଦକ ଓ ପ୍ରସାଦର ମନସ୍ତାତ୍ତ୍ୱିକ ପ୍ରଭାବ ହେତୁ କେବଳ ଯେ ସେ ଭଗବତ, ଚଳାକରେ ନୁହେଁ, ସେ ସମଗ୍ର ପୃଥିବୀକୁ ଈଶ୍ୱର ପ୍ରସାଦରୂପେ ଦେଖେ । ସମାଜ ତାତ୍ତ୍ୱିକ ଦୃଷ୍ଟିରୁ ଏ ଉଭୟର ଏକତ୍ର ସେବନବିଧି ହେତୁ ଜାତି, ବର୍ଣ୍ଣ, ଧର୍ମ, ସାମାଜିକସ୍ଥିତି ଭେଦ ଲୋପ ହୋଇ ବୀର ଶୈବଙ୍କ ମଧ୍ୟରେ ସୌଭ୍ରାତୃତ୍ୱ ପ୍ରତିଷ୍ଠା ହୁଏ ।

ବିଭୂତି ହେଉଛି ଐଶ୍ୱର୍ଯ୍ୟ । ବୀର ଶୈବ ମତରେ ଏହା ହେଉଛି ପବିତ୍ର ପାଉଁଶ । ଏହାର ବିଭିନ୍ନ ନାମ ହେଉଛି ବିଭୂତି, "ଯାହା ଐଶ୍ୱର୍ଯ୍ୟ ଦିଏ," ଭସିତ "ଯାହା ତତ୍ତ୍ୱ ସ୍ୱରୂପ ପ୍ରକାଶକରେ," ଭସ୍ମ "ଯାହା କଳୁଷ ପୋଡ଼ିଦିଏ," କ୍ଷାର 'ଯାହା ଆପଦ ଖଣ୍ଡନ କରେ', ରକ୍ଷା 'ଯାହା ବିପତ୍ତିରୁ ରକ୍ଷାକରେ' । ସମଗ୍ର ଦେହରେ ଭସ୍ମ ବିଲେପନ କଲେ ଦେହର ଅପବିତ୍ରତା ଦୂର ହୁଏ ବୋଲି ବିଶ୍ୱାସ ।

ରୁଦ୍ରାକ୍ଷ ଶୈବାଗମ ମତରେ ରୁଦ୍ରନୟନ ଉତ୍ପନ୍ନ । ରୁଦ୍ର ତ୍ରିପୁରାସୁର ଦୁର୍ଗ ଭସ୍ମ କରିବା ପାଇଁ କ୍ରୋଧୋଦୀପ୍ତ ନୟନରେ ଏକାଗ୍ରଭାବେ ଚାହିଁବାରୁ ଯେଉଁ ଲୋତକ ପାତ ହେଲା ତାହା ହିଁ ରୁଦ୍ରାକ୍ଷ। ଏହି ରୁଦ୍ରାକ୍ଷ ଧାରଣକରି ସାଧକ ଏକାଗ୍ର ଚିତ୍ତରେ ଇଷ୍ଟଲିଙ୍ଗ ଧ୍ୟାନ କରିବାକୁ ଶାସ୍ତ୍ରରେ ଉପଦେଶ ଦିଆଯାଇଛି ।

ମନ୍ତ୍ର ହେଉଛି ସାଧକର ଅଷ୍ଟମ ଆବରଣ । ଏହାର ମନନରେ ସଂସାର ଦୁଃଖରୁ ତ୍ରାଣ ମିଳୁଥିବାରୁ ଏହାର ନାମ ମନ୍ତ୍ର । ନମଃଶିବାୟ ହେଉଛି ପଞ୍ଚାକ୍ଷର ମନ୍ତ୍ର । ଓଁ ପ୍ରଣବ ଯୋଗରେ ଏହା ଷଡ଼ାକ୍ଷର ମନ୍ତ୍ର ରୂପେ ଖ୍ୟାତ ।

ଶୈବ ଶାସ୍ତ୍ର ମାନଙ୍କରେ ଏହି ଅଷ୍ଟାବରଣ ବିଷୟରେ ବିସ୍ତୃତ ବିବର ଦେଖିବାକୁ ମିଳେ ।

—୦—